# ଉତ୍ସର୍ଗ

ଏ ନାଟକର ଅନ୍ତରାଳରେ ଜୀବନ ଜୁଆଖେଳର ଯେଉଁ ଦୁଃଖମୟ ସ୍ମୃତି ଟିକକ ରହିଗଲା, ସେଇଟାକୁ ଚେଷ୍ଟା କରି ସୁଦ୍ଧା ପୋଛିଦେଇହବନ । ସେ ଅଧ୍ୟାୟର ପ୍ରତିଟି ଧାଡ଼ି କେବଳ ରକ୍ତ-ରଞ୍ଜିତ ନୁହେଁ, ବେଶ୍ ବେଦନାସିକ୍ତ । ତଥାପି ସେଥିରେ ଗୌରବ ଅଛି । ତେଣୁ ସେ ସ୍ମୃତି ମନ୍ଥନ କରିବାକୁ ବେଳେବେଳେ ଭଲ ଲାଗିବ । ସେଥିପାଇଁ 'ଆମେ ଦୁଃଖିତ'କୁ ସେଇ ଦୁଃଖମୟ ସ୍ମୃତି ଉଦ୍ଦେଶ୍ୟରେ—

ଅକ୍ଷୟକୁମାର ମହାନ୍ତି

'ଆମେ ଦୁଃଖିତ'ର ବେତାର ନାଟ୍ୟରୂପ ୧୯ । ୬ । ୭୨ ତାରିଖ ରାତ୍ର ଘ ୯।୩୦ ମିନଟ୍ ସମୟରେ 'ଭଗତ ବୁଢ଼' ନାମରେ ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରସାରିତ ।

---

ଏ ନାଟକର ଅଭିନୟ ପ୍ରଦର୍ଶନ ଲେଖକଙ୍କର ଅନୁମତି-ସାପେକ୍ଷ···ଅନ୍ତତଃ ଲୌକିକତା ଦୃଷ୍ଟିରୁ ।

# ଦି'ଧାଡ଼ି

ଠିକ୍ ବାଙ୍ଗ୍ଲା ଦେଶ୍ ଯୁଦ୍ଧ ପରେ ପରେ ଏ ନାଟକର ସୃଷ୍ଟି ବୋଲି ନାଟକଟିରେ ସେଇ ଯୁଦ୍ଧର କରାଳ ଛାୟା ଏତେ ପରିମାଣରେ ସୁସ୍ପଷ୍ଟ—ଯେହେତୁ ମୋର ଅବଚେତନ ମନ ଭିତରେ ସେଗୁଡ଼ାକ ଛନ୍ଦିହୋଇ ରହିଥାନ୍ତି । ସେଇଥିପାଇଁ ବୋଧହୁଏ ଏ ଅଂଶଟି ଏତେ ପ୍ରଚ୍ଛନ୍ନ ହୋଇଛି ଯଦିଓ ନାଟକର କଥାବସ୍ତୁ ସହିତ ଏହାର ଏତେ ବେଶୀ ସଂଯୋଗ ନାହିଁ ।

'ଆମେ ଦୁଃଖିତ' ପ୍ରଥମେ ମଞ୍ଚସ୍ଥ ହୁଏ ରେଭେନ୍ସା କଲେଜ ନାଟ୍ୟ ସଂସଦ ତରଫରୁ ୧୯୭୨ ମସିହା ମାର୍ଚ୍ଚ ମାସରେ—ତାଙ୍କର ମୁକ୍ତାକାଶ ରଙ୍ଗମଞ୍ଚରେ । ଅବଶ୍ୟ ଏଇଟା ଯେ ସେଇମାନଙ୍କ ନିମନ୍ତେ ଲେଖା ହୋଇଥିଲା ଏକଥା ସ୍ୱୀକାର ନ କଲେ ଦୋଷୀ ହେବି । ବେଶ୍ ବ୍ୟୟବହୁଳ ମଞ୍ଚସଜ୍ଜାରେ ଅଭିନୟ ତଥା କଥା-ବସ୍ତୁରେ କେତୋଟି ଦୃଷ୍ଟିକୋଣରୁ ପରୀକ୍ଷାମୂଳକ ଭାବେ ଏହାକୁ ଅଭିନୟ କରାଗଲା । ମୁଁ ଭାବିଲି, ମୋର ଲକ୍ଷ୍ୟ ପୂରଣ ହୋଇ-ସାରିଛି, ଯେହେତୁ ମତେ ଲାଗିଲା, ଏହା ଏକ ସଫଳ ପରିବେଷଣ ।

ନାଟକଟିକୁ କେତୋଟି ନୂତନ ରୂପ ଦେଇ ଉପସ୍ଥାପିତ କରିବାକୁ ଚେଷ୍ଟା କରାଯାଇଥିଲେ ବି ତାହା ସ୍ମରଣୀୟ ଏବଂ ଗ୍ରହଣୀୟ ହେଲା । ବହୁ ଶିକ୍ଷାବିତ୍ ତଥା ନାଟ୍ୟ ରସିକମାନଙ୍କ ଗହଣରେ ଯେତେବେଳେ ନାଟକଟି ମଞ୍ଚସ୍ଥ ହେଲା, ସେତେବେଳେ ମତେ ଅନେକେ ତାଙ୍କ ଭିତରୁ ବହୁପ୍ରକାରର ବଧେଇ ଜଣେଇଛନ୍ତି । ତେବେ ସେତେବେଳେ ସବୁଠୁଁ ଅଡ଼ୁଆରେ ପଡ଼ିଲି ଯେତେବେଳେ କେହି କେହି ପ୍ରଶ୍ନ କଲେ—ଏଇଟା କି ପ୍ରକାରର ନାଟକ, ଅର୍ଥାତ୍ ବର୍ତ୍ତମାନ ଯୋଉ ଆବ୍‌ସର୍ଡ୍, ମଡ଼ର୍ଣ୍ଣ, ଏକ୍ସପେରିମେଣ୍ଟ, ସିରିଆଲିଷ୍ଟିକ୍ ପ୍ରଭୃତିର ସ୍ରୋତ ବହିଛି, ଇଏ ତା ଭିତରୁ କୋଉ ପର୍ଯ୍ୟାୟର ଅନ୍ତର୍ଭୁକ୍ତ ? ସେତେବେଳେ ମୁଁ ହଠାତ୍ ସେମାନଙ୍କୁ

ଉତ୍ତର ଦେଇ ପାରି ନ ଥିଲି । କେବଳ ଏତିକି କହିଥିଲି ଯେ ନାଟକର ରଚୟିତା ମୁଁ; ବିଭାଗ ନିର୍ଣ୍ଣୟ ବା ଜାତିବର୍ଣ୍ଣର ପରିଚୟ ଆପଣମାନେ କରିବା ଉଚିତ ।

ବାସ୍ତବିକ ମୁଁ ଏପର୍ଯ୍ୟନ୍ତ ସେଇଆଡ଼୍ଟି ବୁଝିଚି । ଅର୍ଥାତ୍ ଅମୁକ ବିଭାଗର ନାଟକ ଲେଖିବାକୁ ପରିକଳ୍ପନା କରି ନାଟକ ଲେଖିବା ଆରମ୍ଭ କଲେ ସେଇଟା ଲେଖା ଅପେକ୍ଷା ଅଧିକ କସରତ ହେଇଥାଏ । ସ୍ୱତଃପ୍ରବୃତ୍ତ ଭାବରେ ଯୋଉଟା ମନକୁ ଆସେ ସେଇଟା ଲେଖିଯିବାହିଁ ମୋର ମତ; ତା'ର ବିଭାଗନିର୍ଣ୍ଣୟ ସମୀକ୍ଷକ-ମାନେ କରି ରଖିବେ ।

ତଥାପି ଏଇଟା ନିଶ୍ଚିତ ଯେ ଆମେ ସମସ୍ତେ ପରୀକ୍ଷା ଚଳେଇଛୁଁ ଅନ୍ୱେଷଣ କରି ଚାଲିଛୁ । ନାଟକରେ ମୁଁ ନିହାତି ପ୍ରଚଳିତ ଏକ ଘଟଣାକୁ ନେଇ ବର୍ତ୍ତମାନ ସମାଜର ଏକ ଶ୍ରେଷ୍ଠ anatomy କରିଛି । ତେଣୁ 'ପୁରୁଣା ବୋତଲ' 'ପୁରୁଣା ମଦ'— କିନ୍ତୁ 'ନୂତନ ସ୍ୱାଦ', ଏଇଟାହିଁ ମୋର ପରୀକ୍ଷା ।

ପରେ ପରେ, 'ଡାୟୋନିସସ୍' ନାମକ ଏକ କଳା ଅନୁଷ୍ଠାନ ଏ ନାଟକ ମାର୍ଚ୍ଚ ୧୯୭୩ରେ ଅନ୍ନପୂର୍ଣ୍ଣାରେ ମଞ୍ଚସ୍ଥ କଲେ । ବେଶ୍ କେତେଦିନ ଧରି ଏହା ବହୁତ ଗ୍ରହଣୀୟ ହେଲା । ସେଥିପାଇଁ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ମୁଖକୁ ଏ ନାଟକ ଆସିପାରିଲା । ମୋର ଆନ୍ତରିକ କୃତଜ୍ଞତା ମୁଁ 'ଡାୟୋନିସସ'ର କର୍ମକର୍ତ୍ତା ତଥା କଳାକାରବୃନ୍ଦଙ୍କ ପ୍ରତି ଜ୍ଞାପନ କରୁଛି ।

'ଆମେ ଦୁଃଖିତ' ପଢ଼ିବା ପରେ ବା ଅଭିନୟ କରିବା ପରେ ଯଦି କାହାର ମନକୁ କୌଣସି ବିଷୟ ସ୍ପର୍ଶ କରେ ତା'ହେଲେ ଜଣେଇଲେ କୃତଜ୍ଞ ରହିବି ।

କଟକ
ଦୋଳପୂର୍ଣ୍ଣିମା
୧୮ । ୩ । ୭୩

ଅକ୍ଷୟକୁମାର ମହାନ୍ତି

# କେତେଗୋଟି ବିଶେଷତ୍ୱ

## ମଞ୍ଚ ସମ୍ପର୍କରେ :

ଏ ନାଟକର ମଞ୍ଚ ପରିକଳ୍ପନା ସାମାନ୍ୟ ବ୍ୟୟସାଧ ବୋଲି ଅନେକେ ମତ ଦେଲେ ସୁଦ୍ଧା ଏହାର ମଞ୍ଚସଜ୍ଜା ଅଳ୍ପ ବ୍ୟୟରେ ମଧ ହୋଇପାରେ । ସାଧାରଣରେ ଏହାର ମଞ୍ଚ ହେଲ—ଏକ ସମ୍ପୂର୍ଣ୍ଣ ଆଧୁନିକ ଡ୍ରଇଂରୁମ । ତା'ର ଭିତରେ ଦେଖାଯାଏ ବ୍ରିଜ୍ ଭଳି ଦୁ'ପାଖରୁ ପାହାଚ ଉଠି ଏକ ଶ୍ରେଷ୍ଠ କରିଡର ଭଳି ସ୍ଥାନ ସୃଷ୍ଟି କରିଚ । ଏଇଟା ବସାଉଠା କରିବାପାଇଁ ବ୍ୟବହାର କରାଯାଏ । ତା'ଛଡ଼ା ଉପର ମହଲକୁ ମଧ ଏଇ ଜାଗାଟା ସଂଯୋଗ କରିଚ । ଏଇ ପାହାଚ ବା କରିଡର ତଳ ଦେଇ ଦେଖାଯାଏ ବଗିଚ୍ଚ । ଖୁବ୍ ସୁନ୍ଦର ସୁନ୍ଦର ଫୁଲଗଛ ଏବଂ ତା'ର ଭିତରେ ଏକ ପ୍ରସ୍ତର ମୂର୍ତ୍ତି । କରିଡରର ଉପରଟା ଫାଙ୍କା ଆକାଶ । ଯ୍ୱାର ତଳ ଦେଇ ବଗିଚ୍ଚକୁ ଯିବା ଆସିବା କରାଯାଏ, ଏବଂ ବଗିଚ୍ଚପାଖ ଫାଟକକୁ ମଧ ରାସ୍ତା ଅଛି । ତେଣୁ ଏହାର ଅଭିନୟ ଉପରେ, ତଳେ ଏବଂ ବଗିଚ୍ଚର କୟଦଂଶରେ ମଧ କରାଯାଇପାରେ ।

ସ୍ଥାନବିଶେଷରେ ଏହି ମଞ୍ଚସଜ୍ଜାକୁ ସହଜ କରିବାକୁ ହେଲେ ଏଇ ସିଡ଼ି, ପାହାଚ ଏବଂ କରିଡରକୁ ବାଦ୍ ଦିଆଯାଇ-ପାରେ । କେବଳ ପଛପାଖକୁ ବଗିଚ୍ଚଦେଖେଇ ଖୋଲା ଡ୍ରଇଂରୁମ୍‌ର ଏକ ଦୃଶ୍ୟ ଉପସ୍ଥାପିତ କରାଯାଇପାରେ । ତେବେ ବଗିଚ୍ଚ ଦେଖାଗଲେ ସୁଦ୍ଧା ସେଥିର ପଥର ମୂର୍ତ୍ତିଟା ସ୍ପଷ୍ଟ ହେବା ଉଚିତ ।

# ଅଭିନୟ ସମ୍ପର୍କରେ :

ମଞ୍ଚର ବିଶେଷତ୍ୱ ଦୃଷ୍ଟିରୁ ମଞ୍ଚକୁ କେତୋଟି zoneରେ ପରିଣତ କରାଯାଇ ଅଭିନୟ କରାଯାଇଛି । ଉଦାହରଣସ୍ୱରୂପ, ଜଗଦୀଶ ଆଉ ସୁବ୍ରତର ଗଣ୍ଡଗୋଳ ଭାଙ୍ଗିବା ଉଦ୍ଦେଶ୍ୟରେ ବିଲୁର । ସେ ସମୟରେ ଲିପି ଆଉ ସୁପ୍ରିୟାଙ୍କର କଥାବାର୍ତ୍ତା ଦର୍ଶକ ଶୁଣି-ପାରୁଛନ୍ତି ଏବଂ ସୁବ୍ରତ ଆଉ ଜଗଦୀଶର ଶୁଣୁନାହାନ୍ତି । ତେଣୁ ସେମାନେ ଆଲୋକ zone ରେ ବାହାରେ ରହିବା ସ୍ୱାଭାବିକ । ଏହିପ୍ରକାର ସ୍ଥାନମାନଙ୍କୁ freeze ବୋଲି ଧରିନିଆଯାଇପାରେ । କିନ୍ତୁ ଏହା ଠିକ୍ freez ନୁହେଁ, ଯେହେତୁ ସେମାନଙ୍କର ଆଙ୍ଗିକ ଅଭିନୟ ଚାଲିଛି, ତଥାପି ଏହା ଦର୍ଶକର ଦୃଷ୍ଟି ବ୍ୟାହତ କରି ଭଳି ନୁହେଁ ।

ସେହିପରି ଯୁଦ୍ଧକାହାଣୀ କହିବା ସମୟରେ ସିମ୍ବଲିକ୍ ଭାବରେ ନାଟକର ଅନ୍ୟ ଚରିତ୍ରଗୁଡ଼ିକୁ ଅଣା ଯାଇଛି ଏବଂ ସେଗୁଡ଼ିକ ମଧ୍ୟ ଆଲୋକର zone ଭିତରେ ଏବଂ ସେଇ ମଞ୍ଚର ବିଭିନ୍ନ zone ରେ ରହି ଅଭିନୟ କରିବା ଆବଶ୍ୟକ । ତେଣୁ ଆଲୋକ ସମ୍ପାତର ବିଶେଷତ୍ୱ ଏ ନାଟକର ଅନ୍ୟ ଏକ ଅଙ୍ଗ । ସ୍ଥାନବିଶେଷରେ ମଞ୍ଚର ଗଠନ ପ୍ରଭେଦ ଦୃଷ୍ଟିରୁ ଏ ପରିବେଷଣଗତ ସ୍ୱାତନ୍ତ୍ର୍ୟ କିଞ୍ଚିତ୍ ପରିବର୍ତ୍ତନ କରାଗଲେ ସୁଦ୍ଧା ନାଟକର ମୁଖ୍ୟ ଲକ୍ଷ୍ୟ ବ୍ୟାହତ ହେବ ନାହିଁ ।

## ରେଭେନ୍‌ସା କଲେଜ ନାଟ୍ୟ ସଂସଦ ଆନୁକୂଲ୍ୟରେ ପରିବେଷିତ ସନ୍ଧ୍ୟାର ଅବକାଶରେ

ମେଜର—ଅଭୟକୁମାର ମହାନ୍ତି
ଜଗନ୍ନାଥ—ବିଜୟ ସିଂହ
ସୁବ୍ରତ—ସଦାନନ୍ଦ ପାତ୍ର
ନିଶୀଥ—ସୌମ୍ୟକାନ୍ତ ଖଣ୍ଡେଇ
ମିଃ ସ୍ୱାମୀ—ବିଜୟକୁମାର ଆଗ୍ରୱାଲ
ବଳଭଦ୍ର—ଶରତ୍ କୁମାର ଦାସ
ସାମ୍ବାଦିକ—ବିନୟ କୁମାର ଦେ
ଆଗନ୍ତୁକ—ପ୍ରଫୁଲ୍ଲକିଶୋର ସିଂ
ମିଃ ପଟ୍ଟନାୟକ—ଗଙ୍ଗାଧର ତ୍ରିପାଠୀ
ସୁପ୍ରିୟା—ସଞ୍ଜୀବନୀସୁଧା ପଟ୍ଟନାୟକ
ଲିପି—ସ୍ୱପ୍ନପ୍ରଭା ମହାନ୍ତି

ବ୍ୟବସ୍ଥାପନା—ଅଧ୍ୟାପକ ସର୍ବଶ୍ରୀ ମହାପାତ୍ର ନୀଳମଣି ସାହୁ
ରାମଚନ୍ଦ୍ର ତ୍ରିପାଠୀ
ମନୋଜ ଚକ୍ରବର୍ତ୍ତୀ
ସତ୍ୟଶଙ୍କର ମିଶ୍ର
ଅଧ୍ୟାପିକା ଶ୍ରୀମତୀ ସୁଷମା ତେଜ
ଶ୍ରୀମତୀ ଶାନ୍ତି ଦାସ

ମଞ୍ଚସଜ୍ଜା—ରୂପମନ୍ଦିର, କଟକ
ଆଲୋକ—ଶ୍ରୀ ସତ୍ୟନାରାୟଣ ସିଂ
ସଙ୍ଗୀତ—ଶ୍ରୀ ନବଘନ ମିଶ୍ର
ଅଭିନୟ ରଜନୀ—ତା ୨୩ । ୩ । ୬୨
ନିର୍ଦ୍ଦେଶ—ଅକ୍ଷୟକୁମାର ମହାନ୍ତି

## ଡାୟୋନିସିଅସ ତରଫରୁ କଟକସ୍ଥ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ମାର୍ଚ୍ଚ ୧୬, ୧୭, ୧୮ ତାରିଖ ୧୯୭୩ରେ ଯେଉଁମାନେ ଉପସ୍ଥାପିତ କଲେ—

ସେମାନେ……

ମେଜର—ଅଭୟକୁମାର ମହାନ୍ତି
ଜଗଦୀଶ—ବିଜୟ ସିଂ
ସୁବ୍ରତ—ଶିବାନନ୍ଦ ପାତ୍ର
ନିଶୀଥ—ପ୍ରେମାନନ୍ଦ ମହାନ୍ତି
ମିଃ ସ୍ୱାମୀ—ରମାପଦ ମହାନ୍ତି,
ବଳଭଦ୍ର—ନାରାୟଣପ୍ରସାଦ ଦୀକ୍ଷିତ
ସାମ୍ବାଦିକ—ବିନୟ କୁମାର ଦେ
ଆଗନ୍ତୁକ—ବଙ୍କିମବିହାରୀ ଘୋଷାଲ
ମି: ପଟ୍ଟନାୟକ—ପ୍ରସନ୍ନକୁମାର ମହାପାତ୍ର
ସୁପ୍ରିୟା—ସଞ୍ଜୀବନୀସୁଧା ପଟ୍ଟନାୟକ
ଲିପି—ବିଜୟା ଲକ୍ଷ୍ମୀ ମହାପାତ୍ର
ବ୍ୟବସ୍ଥାପନା—ଉରଞ୍ଜି ଦେ
କଲ୍ୟାଣୀ କାନୁନ୍‌ଗୋ
ତତ୍ତ୍ୱାବଧାନ—ଗୋକୁଳାନନ୍ଦ ରାଉତ
ଯୋଗାଯୋଗ—ସୁଧାଂଶୁଶେଖର ମିଶ୍ର
ଓ
ଡାଓନିସିଅସର କର୍ମକର୍ତ୍ତାବୃନ୍ଦ
ଆଲୋକ—ମଞ୍ଚ ଆଲୋକ
ରୂପସଜ୍ଜା—ରୂପମନ୍ଦିର
ମୁଖ୍ୟ ଅତିଥି—ଶ୍ରୀ ନିତ୍ୟାନନ୍ଦ କାନୁନ୍ ଗୋ (ପୂର୍ବତନ ରାଜ୍ୟପାଳ)
ନିର୍ଦ୍ଦେଶନା—ଅକ୍ଷୟକୁମାର ମହାନ୍ତି

# ଚରିତ୍ର ସମୂହ

ମେଜର : ମେଜର ରାଘବ ଶର୍ମା । ଏଇ ଶେଷ ବାଙ୍ଗ୍‌ଲାଦେଶ ଯୁଦ୍ଧଫେରନ୍ତା ଏକ ଦେଶପ୍ରେମୀ ମେଜର । ତାହାଣ ଗୋଡଟି ଯୁଦ୍ଧରେ ଅକାମୀ ହୋଇଯାଇଛି । ତେଣୁ ଆଶାବାଡ଼ି (କଚ) ସାହାଯ୍ୟରେ ଚାଲନ୍ତି । ବୟସ ପ୍ରାୟ ପଇଁଚାଳିଶ । ହେଲେ ବି ପଚିଶ ବର୍ଷ ବୟସ୍କ ଯୁବକର ଦାମ୍ଭିକତା ରହିଛି । ଆକର୍ଷଣୀୟ ରୂପକାନ୍ତି । ସେଥିରୁ ତାଙ୍କର ବ୍ୟକ୍ତିତ୍ୱ ସ୍ପଷ୍ଟ ଜଣାପଡେ ।

ନଶିଥ : ନଶିଥ ପଟ୍ଟନାୟକ । ମିଷ୍ଟର ହେମ ବଲ୍ଲଭ ପଟ୍ଟନାୟକଙ୍କର ଏକମାତ୍ର ପୁତ୍ର । ନିକଟରେ ଆମେରିକାରୁ ଫେରିଚନ୍ତି । ଚାଲିଚଳଣି ହାବଭାବରେ ସେଇ ବିଦେଶୀ ସଭ୍ୟତାର ଆଭାସ ଥିଲେ ବି ବେଶଟା ରୁଚିକର ଭଳି ମନେହୁଏ । ବୟସ ପ୍ରାୟ ଚବିଶ୍ ପଚିଶ୍ ।

ଜଗଦୀଶ : ଜଗଦୀଶ ଦୁବେ । ମେସର୍ସ ଦଲପତ୍ ସିଂ ପ୍ରାଇଭେଟ ଟ୍ରାନ୍‌ସ୍‌ପୋର୍ଟ କମ୍ପାନୀର କେସିଅର ଟେକର । ବୟସ ପ୍ରାୟ ଚାଳିଶ ପାଖାପାଖି । ଏକାନ୍ତ ଭାବରେ ବିଶ୍ୱସ୍ତ ଏବଂ କର୍ତ୍ତବ୍ୟ ସଚେତ ଭଳି ମନେହୁଏ । କଥାବାର୍ତ୍ତାର ଭାବ ଭଙ୍ଗୀ ବେଶ୍ ହାସ୍ୟୋଦ୍ଦୀପକ ହେଲେ ସୁଦ୍ଧା ପ୍ରତିଟି କଥା ଯେ ଅଭିଜ୍ଞତାଯୁକ୍ତ ଏଥିରେ ସନ୍ଦେହ ନାହିଁ ।

ମି: ସ୍ୱାମୀ : ଭି. ଆର. ସ୍ୱାମୀ । 'ଲେଗାସ୍' ନାମକ କୌଣସି ବିଦେଶୀ ଫାର୍ମର ରିଜିଓନାଲ ମ୍ୟାନେଜର । ସମ୍ପୂର୍ଣ୍ଣ ଭାବରେ ବିଦେଶୀୟ ହାବଭଙ୍ଗୀ । ଆଖିକୁ ଦେଖାଗଲା ଭଳି ସୌମ୍ୟ କାନ୍ତି । ବ୍ୟବସାୟର ସର୍ତ୍ତ ଭିତରେ ଯେତେଟା ଫାଇଦା ଉଠାଯାଇପାରେ ସେଥିପାଇଁ ସେ ଚେଷ୍ଟିତ ।

ସୁବ୍ରତ : ନିକଟସ୍ଥ କୌଣସି ଏକ କଲେଜର ଛାତ୍ର । ବୟସ କୋଡ଼ିଏ ପ୍ରାୟ । ବୟସର ଉତ୍ତାପ ସଙ୍ଗେ ସଙ୍ଗେ ରକ୍ତର ଉଷ୍ଣତା ବେଶ୍ ପରିମାଣରେ ରହିଛି । ଜଣେ ଅବସରପ୍ରାପ୍ତ ଆଇ. ଏ. ଏସ୍ ଅଫିସରଙ୍କ ପୁଅ ।

ବଳଭଦ୍ର : ଘରର ପୁରୁଣା ଚାକର । ବୟସ ପ୍ରାୟ ପଚିଶଠାରୁ ଚାଳିଶ ଭିତରେ । ବଡ଼ଘରେ ରହି ବଡ଼ ବଡ଼ ଆୟୋଜନ ଭିତରେ ସବୁବେଳେ ଅଣ-ନିଃଶ୍ୱାସୀ ।

ଆଗନ୍ତୁକ : ଜଣେ ଯୁବକ । ତଥାପି ତାଙ୍କର ପ୍ରବେଶ କରୁଥିବା ପରିବେଶରେ ବେଶ୍ ଭଦ୍ରଙ୍କର ମନେହେଲେ ବି ବର୍ତ୍ତମାନର ପୋଷାକ ପରିଚ୍ଛଦ ଅପେକ୍ଷା ଅଧିକ କିଛି ନୁହେଁ । ହୁଏତ ଲମ୍ବାକଲି ବା ସାମାନ୍ୟ ନିଶ ସହିତ ବେଶଟା ସେହିପରି ।

ମି: ପଟ୍ଟନାୟକ : ମିଷ୍ଟର ହେମବଲ୍ଲଭ ପଟ୍ଟନାୟକ । ଘରର ମାଲିକ । ବୟସ ପ୍ରାୟ ପଞ୍ଚାବନ । ବେଶ୍ ଆଭିଜାତ୍ୟ ପରିସ୍ଫୁଟ ତାଙ୍କ ମୁଖମଣ୍ଡଳରୁ । କଥାବାର୍ତ୍ତା ବ୍ୟକ୍ତିତ୍ୱପୂର୍ଣ୍ଣ ।

ସାମ୍ବାଦିକ : 'ଦୈନିକ ସମାଚାର'ର ସାମ୍ବାଦିକ । ସମ୍ପାଦକଙ୍କ ତରଫରୁ ଆସିଛନ୍ତି । ବୟସ ପ୍ରାୟ ତିରିଶରୁ ପଇଁତିରିଶ । ପରିଧାନ ଧୋତି ପଞ୍ଜାବୀ ।

ମିସେସ୍ ପଟ୍ଟନାୟକ : ସୁପ୍ରିୟା ପଟ୍ଟନାୟକ । ବୟସଟା ପଇଁତିରିଶିରୁ ଊର୍ଦ୍ଧ୍ୱ ହେଲେ ବି ମନେହୁଏ କେମିତି କେଜାଣି ସତର କରିବାରେ ଆପ୍ରାଣ ଚେଷ୍ଟା । ବହୁତ ଦାମୀ ପରିଧେୟ ଏବଂ ଚରମ ରୂପସଜ୍ଜା ଭିତରେ ସେ ଆଦୌ ଧରାଦବାକୁ ଚାହାନ୍ତିନାହିଁ ବୟସର ଜାଲ ଭିତରେ । ଜଣେ ବୟସ୍କା ଝିଅର ମା'ତ ବୋଲି ମାନିନବାକୁ ଯେମିତି ତାଙ୍କର ମାନସିକ ପ୍ରସ୍ତୁତି ନାହିଁ କହିଲେ ଚଳେ । ଯେକୌଣସି ପରିବେଶ ଆଉ ପରିସ୍ଥିତିରେ ନିଜକୁ ଚଳେଇନବା ତାଙ୍କର ବିଶେଷତ୍ୱ ।

ଲିପି : ଲିପି ପଟ୍ଟନାୟକ । ସୁପ୍ରିୟାଙ୍କ କନ୍ୟା, ଅତ୍ୟାଧୁନିକା, ରୂପସୀ, ଛନ୍ଦମୟୀ । ନିକଟସ୍ଥ କୌଣସି କଲେଜର ଛାତ୍ରୀ । ଚପଳତା ସହିତ ଆଭିଜାତ୍ୟ ତଥା ଆଧୁନିକତା ପରିସ୍ଫୁଟ ହୋଇଉଠେ । ବୟସ ଅଠର ବା ଉଣେଇଶ ।

[ ପରଦା ଉଠିଲା । ମଞ୍ଚ ଆଲୋକିତ ହେବା ପରେ ଦେଖାଗଲା ଗୋଟିଏ ସୁସଜ୍ଜିତ କକ୍ଷ । ଅତି ସୁନ୍ଦର ରୁଚିପୂର୍ଣ୍ଣ ଆସବାବପତ୍ର । ଦାମୀ ଜିନିଷ ସାଙ୍ଗକୁ, ସଜେଇବାରେ ଯେ ରୁଚି ଅଛି, ଏକଥା ବେଶ୍ ସ୍ପଷ୍ଟ । ଦାମୀ ସୋଫା-ସେଟ୍, ଫୁଲଦାନୀ, ରେଡିଓଗ୍ରାମ୍, ଟେଲିଫୋନ, ସାଙ୍ଗକୁ ବହିପତ୍ର ରଖିବାପାଇଁ ଦାମୀ ବୁକ୍ ସେଲ୍ଫ୍ ।

ଘରଟିର ଗଠନ ଏମିତି ଯେ, ପଛପାଖ ଦେଇ ବାହାର ପଟ ବଗିଚାର କିଛି ଅଂଶ ମଧ୍ୟ ଦେଖା-ଯାଏ । ସେଇ ଘରଭିତରୁ ଉପର ମହଲକୁ ସିଡ଼ି ।

ସକାଳ ପ୍ରାୟ ସାଢ଼େ ସାତଟା ସମୟରେ ରେଡ଼ିଓରୁ ଠିକ୍ ଓଡ଼ିଆ ସମ୍ବାଦ ଶେଷ ହେଲାବେଳକୁ ପ୍ରବେଶ କଲେ ଜଣେ ଭଦ୍ରମହିଳା । ବୟସ

ପ୍ରାୟ ୩୬।୩୭ ବର୍ଷ ପାଖାପାଖି ।
ହେଲେ କେଜାଣି ଭୁଲରେ ସୁଦ୍ଧା ବୟସ
କରିବାକୁ ରାଜି ହେବେନି ଏତେଗୁଡ଼ାଏ
ବୟସ ବୋଲା ୩୭କୁ ୧୭କରିବାରେ
ଯେପରି ଆପ୍ରାଣ ଉଦ୍ୟମ, ଦାମୀ
ପରିଚ୍ଛଦ ଭିତରେ ଆଧୁନିକତାଟାକୁ
ଯଥେଷ୍ଟ ରୂପଦାନ କରିବାକୁ ଯେମିତି
ସେ ସଚେତ । ଉଦାହରଣସ୍ୱରୂପ,
ଓଠରେ ରଙ୍ଗ ପାଇଁ ଲିପଷ୍ଟିକ୍
ଲଗେଇବାକୁ ଦ୍ୱିଧା ବୋଧ କଲେ
ସୁଦ୍ଧା ପାନ ଖାଇବାରେ ଲୋଭ ଅଛି ।
ଭଦ୍ରମହିଳା ପ୍ରବେଶ କଲାମାତ୍ରେ
ଆକାଶବାଣୀରୁ ସମ୍ବାଦ ଶେଷ ହେବା
ଜାଣି, ନିଜ ଘଣ୍ଟା ମିଳେଇନେଲେ ।
ତା'ପରେ ଗୃହଆଡ଼କୁ ଗୃହିଁଲେ ।
ଗୃହିଁ ଦେଖିଲେ, କେହି ଦଶୁନାହାନ୍ତି ।
ତେଣୁ ରେଡିଓଟା ପ୍ରଥମେ ବନ୍ଦ କରି-
ଦେଲେ । ସୋଫା ସେଟ୍‌ରେ ବସିବା
ଆଗରୁ ନିଜର ପୋଷାକ ପ୍ରତି ଟିକିଏ
ଧ୍ୟାନ ଦେଇ ପ୍ଲିଟ୍ ଖୋଜ ସଜାଡ଼ି-
ନେଇ ବସିଲେ । ତା' ପରେ ଭ୍ୟାନିଟି
ବ୍ୟାଗରୁ ଅଧାବୁଣା ଉଲ ସୁଏଟର
କଣ୍ଟା ବାହାର କରି ରଖିଲେ । ଏବଂ
ତା' ପରେ ପାଉଡରର ଡବାଟା କାଢ଼ି

ତା'ର ସ୍ତ୍ରୀଙ୍କ ଆଇନାରେ ନିଜ ମୁହଁ ଦେଖି ରଖିଦେଇ ଉଲ୍ ବୁଣିବା ଆରମ୍ଭ କଲେ । ପ୍ରବେଶ କଲା ବଳଭଦ୍ର, ଘରର ଚାକର । ବୟସ ଚାଳିଶ ପାଖାପାଖି । ତା'ର ପ୍ରବେଶ କରିବା ଜାଣିପାରି ଭଦ୍ରମହିଳା ଚାହିଁଲେ ତା' ଆଡ଼କୁ—ନିତାନ୍ତ ବେଖାତିର ଭାବରେ । ତା'ପରେ ପୁଣି ମୁହଁ ତଳକୁ କରି ଉଲ ବୁଣିବାରେ ମନ ଦେଲେ । ବଳଭଦ୍ର କିଛି ବୁଝି ନ ପାରି ପାଖକୁ ଯାଇ ]

ବଳଭଦ୍ର—ଜୁହାର, ଆଜ୍ଞା !

ଭଦ୍ରମହିଳା—(ପ୍ରତ୍ୟୁତ୍ତର ନ ଦେଇ) ବାବୁ ?

ବଳଭଦ୍ର—ଅଛନ୍ତି, ଆଜ୍ଞା !

ଭଦ୍ରମହିଳା—ଆଉ କଣ ନ ଥାନ୍ତେ ?

ବଳଭଦ୍ର—(ବୁଝି ନ ପାରି) ଆଜ୍ଞା ?

ଭଦ୍ରମହିଳା—ଅଛନ୍ତି ବୋଲି କଣ ମୁଁ ଜାଣିନାହିଁ !

ବଳଭଦ୍ର—(ସହଜ କରିଦେଇ) ଆଜ୍ଞା, ତା ଆଉ ଆପଣ ଜାଣି ନ ଥିବେ ?

ମହିଳା—ଉଠିଲେଣି ?

ବଳଭଦ୍ର—ଏତେବେଳଯାଏ ?

ମନ୍ତ୍ରୀ—(ଶକ୍ତ) Rubbis !
ମୁଁ ତମକୁ ପ୍ରଶ୍ନ ପଚାରୁଚି, ତମେ ମତେ ପ୍ରଶ୍ନ ପଚାରୁଚ ;
କଣ କରୁଛନ୍ତି ?

ବଳଭଦ୍ର—ଆଜ୍ଞା, ପୂଜାରେ ବସିଲେଣି ।

ମନ୍ତ୍ରୀ—କେତେବେଳୁ ?

ବଳଭଦ୍ର—ଏଇ ବର୍ତ୍ତମାନ ବସିଲେ ତ ଆଜ୍ଞା !

ମନ୍ତ୍ରୀ—କେତେବେଳଯାଏ ବସିବେ ?

ବଳଭଦ୍ର—ଠିକ ଦେଢ଼ଘଣ୍ଟା ।
ଘଡ଼ି ଦେଖି ଠିକ୍ ଦେଢ଼ଘଣ୍ଟା

ମନ୍ତ୍ରୀ—ଦେଢ଼ଘଣ୍ଟା ପୂଜା କରନ୍ତି ?
ଏତେ ସମୟ ?

ବଳଭଦ୍ର—ଘଣ୍ଟାଏ କରୁଥିଲେ, ଅଜ୍ଞା !
ଏଇ ପ୍ରାଣାୟାମ କଲାଦିନଠୁଁ ଆଉ ଅଧଘଣ୍ଟାଏ ବଢି-
ଯାଇଚି ।

ମନ୍ତ୍ରୀ—(ହାତଘଣ୍ଟା ଦେଖି) ତା'ମାନେ, ନଅଟା ।

ବଳଭଦ୍ର—ଅଜ୍ଞା ।

ମନ୍ତ୍ରୀ—ଆଉ, ସମସ୍ତଙ୍କୁ ସାଢ଼େଆଠଟାବେଳକୁ ଡାକଦେଲେ
କାହିଁକି ?

ବଳଭଦ୍ର—ଆଜ୍ଞା, ଡାକଦେଲେ ?

ମନ୍ତ୍ରୀ—ତମକୁ କଣ୍ଣ କହିନାହାନ୍ତି ?

ବଳଭଦ୍ର—(ଭାବି) ଏଁ, ହଁ ।
ମାନେ, କହିବା କଣ ଦରକାର, ଅଜ୍ଞା ?
ସେ ତ ଜାଣନ୍ତି, ସାଢ଼େଆଠଟା ବେଳକୁ ଡାକିଲେ
ଅସିଲାବେଳକୁ ବଳେ ନଅଟା ହୋଇଯିବନି କି !

ମଲ୍ଲିକା—ଆରେ ବାଃ, ସୁନ୍ଦର ଯୁକ୍ତି !
ସାଢ଼େଆଠଟା ବେଳକୁ ଡାକିଲେ, ଆସିଲାବେଳକୁ
ନଅଟା ହୋଇଯିବ !
ଆଜ୍ଞା ସାଢ଼େଆଠଟା ବେଳକୁ ଡାକିଲେ, ଆଠଟା
ବେଳକୁ ଆସିବା ଲୋକ ବି ଅଛନ୍ତି ବୋଲି ବାବୁଙ୍କର
ଧାରଣା ଅଛି ନା ନାହିଁ ?
ଧନ୍ୟରେ ଦେଶ !
ସେଇଥିପାଇଁ ଏ ଦେଶର ଅବସ୍ଥା ଏଇଆ ।

ବଳଭଦ୍ର—(ମୁକ୍ତି ପାଇବା ପାଇଁ) ଆଜ୍ଞା, ମୁଁ ଯିବି ?

ମଲ୍ଲିକା—ବସନ୍ତୁ, ଗପିବା । (ହସିଗଲେଇ

ବଳଭଦ୍ର—ନାହିଁ ଆଜ୍ଞା, ମୁଁ କହୁଥିଲି, କାଳେ ଚା ପା ଖାଇବେ ·

ମଲ୍ଲିକା—ମାନେ ?
କାଳେ କ'ଣ ମ ?
ଆଉ କଣ ବଜାରରୁ ମଗେଇ ଖାଇବି ?

ବଳଭଦ୍ର—(ହସି) ହେଁ-ହେଁ, ସେଇଟା ଆଉ ମୁଁ କହିବି ନା ?
ଆପଣ ଖାଲି କହିଲେ, କଲି ··

ମଲ୍ଲିକା—କହିଲେ ?
ହଇହୋ, ତମେ କୋଉ ହୋଟେଲରେ ଥିଲ କହୋ ?
କାହିଁ, ଘରଖୁକର ପରି ତ ଜମା ଜଣାପଡ଼ୁନା !
ହୋଟେଲର ଆଟେଣ୍ଡାଣ୍ଟକୁ କହିଲେ ଯେମିତି ଚା'
ଆଣେ, ତମେ ସେମିତି କଣ କହିବାକୁ ଅପେକ୍ଷା କରିଚ ?
କେହି ଜଣେ ଭଦ୍ରଲୋକ ଆସିଲେ ତ ଚା'କପେ ଦବ ।
ପଚାରିବ ଗୋଟାଏ କଣ ?

ବଳଭଦ୍ର—ଆଜ୍ଞା, କଏ କଏ ଖାଆନ୍ତି ନାହିଁ ଗୃ ।

ମହ୍ବଳା—ଯିଏ ଯିଏ ଖାଆନ୍ତି ନାହିଁ, ସେମାନେ ଭଦ୍ର ତାଲିକାରେ ଯାଆନ୍ତି ନାହିଁ ।

ନାହିଁ, ସେକଥା ନୁହେଁ ଯେ, ସେ ଦୋଷଟା ତମର ନୁହେଁ, ତମ ଦେଶର ।

ରାଜା ଚାଲିଗଲେ, ହେଲେ ରାଜୁତି ଯାଇନାହିଁ ।

ବାବୁ ଆସିବେ, କି ବାବୁଆଣୀ ଆସିବେ, ହଠାତ୍ ଗୋଟାଏ ଫାଳିଆ ପାନିରେ ଚିତ୍କାର କରିବେ—ଜଗୁଆ, ରଘୁଆ, କାଧିଆ, ଚା' ଆଣ୍ !

ତମେମାନେ ସେଇଠୁ ନସରପସର ହୋଇ ଯାଇ, ତରବର କରି ଚା କରି, କାଇଁକାଇଁକା, କାଇଁକାଇଁକା ଆଣି ଥୋଇବ ।

ସେ ଶିକ୍ଷାଟା ଆଉ ବଦଳିପାରିବ ନାହିଁ ।

ଦେଶର ପରିବର୍ତ୍ତନ ଆଉ ହବନାହିଁ ବାବୁ, କେବେ ହବନାହିଁ ।

ଏକା ରାତିକେ ଶହେ କୋଡ଼ିଏ ମହଲା କୋଠା ତିଆରି ହବାର ଯୋଜନା ହୋଇପାରିଲାଣି; କିନ୍ତୁ ଆମେ ତ କୋଣାର୍କ, ତାଜମହଲକୁ କୁଣ୍ଢେଇ ବସିଚେଁ ।

(ବଳଭଦ୍ର ଦେଖିଲା, ଟିକେ କଥାଟା ବନ୍ଦ ହେଲାଭଳି ଜଣାଗଲା । ସେଇଠୁ ଭିତରକୁ ଚାଲିଗଲା । ଉଲ୍ ବୁଣାରେ ମନ ଦେଲେ ଭଦ୍ରମହିଳା । କିଛି ସମୟ ଅତିବାହିତ ହେଲା ପରେ ବାହାରୁ ପ୍ରବେଶ କଲେ ଆଉ ଜଣେ ଯୁବକ । ସୁଟ୍ ଟାଇ ପରିହିତ । ଖୁବ ଉଚ୍ଚ-ଶିକ୍ଷିତ ଭଳି ଜଣାପଡ଼ନ୍ତି । ଚାଲିଚଳଣରେ ବେଶ୍

ଆଦବ୍ କାଇଦା, ଏବଂ ପାଶ୍ଚାତ୍ୟ ରୁଚି ହେଲେ ମଧ୍ଯ
କଟୁ ନୁହେଁ)

ଯୁବକ—(ଭଦ୍ରମହିଳାଙ୍କୁ ଦେଖି ସଭ୍ରମତା ରକ୍ଷା କରି) ନମସ୍କାର !

ମହିଳା—(ଅଳ୍ପ ଟିକେ ମୁଣ୍ଡ ଟୁଙ୍ଗାରି) ବାବୁ ପୂଜାରୁ ଉଠିବେ
ନଅଟାବେଳେ ।

ଯୁବକ—(ଟିକେ ହସିଦେଇ) ମୁଁ ଜାଣେ ।
ଏଇଟା ଗୋଟାଏ ଅଦ୍ଭୁତ ଅଭ୍ୟାସ ବାପାଙ୍କର ବଢ଼ି-
ଯାଇଛି ।

( 'ବାପା' ଡାକରେ ଭଦ୍ରମହିଳାଙ୍କ ଜ୍ଞାନ ଫେରିଆସିଛି ।
ଉଠିପଡ଼ି )

ମହିଳା—ବାପା ? ଓ, ମାନେ······

ଯୁବକ—ଆଜ୍ଞା, ମୁଁ ନିଶୀଥ ପଟ୍ଟନାୟକ,
ଯାହା କଥା ଆପଣ ହୁଏତ ଶୁଣିଥିବେ ।
ତାଙ୍କ ବଡ଼ ପୁଅ ।

ମହିଳା—(ଖୁସି ହୋଇ) ଓହୋ, ଅରେ ତମେ ନିଶୀଥ ।
ମୁଁ ଆଉ···

ନିଶୀଥ—ଆପଣ କେମିତି ଜାଣିବେ ?
ମୁଁ ତ ତିନିବର୍ଷ ହେଲା ଆମେରିକାରେ ।
ଯଦି ପିଲାବେଳେ ଥରେ ଅଧେ ଦେଖିଥିବେ ।

ମହିଳା—ହଁ, ହଁ, ପିଲାବେଳେ ଥରେ ଅଧେ କାହିଁକି, କେତେ
ଥର ଦେଖିଥିବି ।
କଓ ତମେ ନିଶୀଥ,
କୁଆଡ଼େ ଯାଇଥିଲ ତମେ ଏତେବେଳଯାଏ ?

ନିଶୀଥ—ମୁଁ କାଲି ରାତିରେ ନନ୍ଦନ କାନନରେ ରହିଥିଲି ।
ଏଇ ସକାଳୁ ଆସୁଚି ।
ମଞ୍ଜୁଲା—ଚମତ୍କାର !
ମୁଁ ଏଇଗୁଡ଼ିକ ଭାରି ପସନ୍ଦ କରେ ।
ଏଇ ବୟସରେ ଯେତେ ବୁଲିବ, ପାର୍ଟି, ପିକ୍‌ନିକ୍
ଏଇ ସବୁ କରି ନିଜକୁ କ୍ଳାନ୍ତ କରିଦେବା ଉଚିତ ।
ତା' ହେଲେ ଜୀବନର ଶେଷଆଡ଼କୁ ସେଇଗୁଡ଼ାକ
ମନେ ପକେଇ କିଛି ଦିନ ଟାଣିନେଇହେବ ।
ନିଶୀଥ—(ମୃଦୁ ହସି) ବାପାଙ୍କ ସାଙ୍ଗରେ ଦେଖା ହେଇଚି ?
ମଞ୍ଜୁଲା—ନା ।
ମୁଁ ଆସିଲାବେଳକୁ ପୂଜାରେ ବସିଗଲେଣି ।
ନିଶୀଥ—ଆମେରିକାରୁ ଫେରିଆସି ମୁଁ ଦେଖୁଚି, ବାପାଙ୍କର
ଏଇ ପୂଜାଧନ୍ଦାଟା କେମିତି ବଢ଼ିଯାଇଚି !
ଅବଶ୍ୟ ପ୍ରଥମରୁ ସେ ଖୁବ୍ ଭଗବଦ୍‌ବିଶ୍ୱାସୀ ।
ମଞ୍ଜୁଳା—ହବା ଉଚିତ, ନିଶୀଥ !
ଏ ଦେଶଟାରୁ ଭଗବଦ୍‌ବିଶ୍ୱାସ କ୍ରମେ କମିଯାଉଚି
ବୋଲି ଆମେ ତଳକୁ ତଳକୁ ଗଳିଯାଉଚୁଁ ।
ନିଶୀଥ—ଏ...ବଳି ! (ଡାକିଚି)
ମଞ୍ଜୁଳା—କିଏ ସେ' ? ମୁଁ କିହିଦେଇଚି ।
ନିଶୀଥ—ଓ, କହିଦେଇଚନ୍ତି !
ଯା' ହଉ !
ନହେଲେ ସେଇଟା ଗୋଟାଏ ଠାପୁଆ ରକମର ଯେ
ଟିକେ—
ମୋ ପାଖରେ ରହିଲେ , ଦିନକରେ ଠାପୁଆପଣ
ଛଡ଼େଇ ଦିଅନ୍ତି ।

ନଶୀଥ—ପ୍ରକୃତରେ, ଆଜ୍ଞା !

ମତେ ଏଇ ଲୋକଗୁଡ଼ାଙ୍କୁ ମୋଟେ ଭଲ ଲାଗେ ନାହିଁ ।
ଏତେ କମ୍ I. Q. ଏମାନଙ୍କର !
ଦଶ ଥର କହିଲେ ବୁଝିବେନ ।
ହୁଏତ ସେସବୁ ଦେଶମାନଙ୍କରେ…

ମହିଳା—ଏକଜାକ୍‌ଟ୍‌ଲି, ନଶୀଥ !

ମୁଁ ତମକୁ ଠିକ୍ ବୁଝିପାରୁଚି, ତମେ କ'ଣ ଗୁହଁ ।
ମୋ ଝିଅ ମୋ'ଠାରୁ ବି ଆହୁରି ପ୍ରଗତିଶୀଳା ।
ଆମ ଦେଶର ରୁଚି ତାକୁ ମୋଟେ ଭଲ ଲାଗେନି ।
ତମେ ଦେଖିବ,
ମୋ ଝିଅ ?
ଆଃ, really she is one among a lot.

ନଶୀଥ—ମୁଁ ଟିକିଏ ଦେଖେଁ, ସେ କ'ଣ କଲା ।

ମହିଳା—ହଁ ହଁ, ତମେ ଟିକେ ଦେଖ ।

ତା ଛଡ଼ା, ଏତେ ବାଟରୁ ଆସିଚ,
ସେ ଯୋଉ ନାଲି ଧୂଳ; ଟିକେ ରିଫ୍ରେସ ହେଇଯାଅ ।
(ଭିତରକୁ ଗଲା ନଶୀଥ । ଭଦ୍ର ମହିଳା ଠିକ୍ ଫେରିଲା-ବେଳକୁ ପ୍ରବେଶ କଲେ ବାହାରପଟରୁ ଜଣେ ଭଦ୍ରବ୍ୟକ୍ତି—ବୟସ ୩୫ ପାଖାପାଖି । ହେଲେ ବହୁ ଉଚ୍ଚପଦସ୍ଥ ବୋଲି ଜଣାପଡ଼ନ୍ତି । ସୁଟ୍ ପରିହିତ । ହାତରେ ଗ୍ଲେଟ ବ୍ରିଫ୍‌କେସ୍ । ଭିତରକୁ ପ୍ରବେଶ କଲାବେଳେ ଦେଖିଲେ ଭଦ୍ରମହିଳାଙ୍କୁ । ସଂଭ୍ରମତା ଦେଖାଇଲେ)

ଭଦ୍ରବ୍ୟକ୍ତି—ଗୁଡ଼ ମର୍ଣ୍ଣିଂ, ଏଇ ଆମ୍ ସ୍ୱାମୀ, ଜେନେରାଲ
ମ୍ୟାନେଜଂ ଡାଇରେକ୍ଟର, କଲେଗାସ୍ ।

ମଲ୍ଲିକା—ଗୁଡ଼ ମର୍ଣ୍ଣିଂ,
ମୁଁ ହେଉଛି ମିସେସ୍ ସୁପ୍ରିୟା ପଟ୍ଟନାୟକ ।

ସ୍ୱାମୀ—Oh, nice !

ମଲ୍ଲିକା—କ'ଣ ?

ସ୍ୱାମୀ—ଏକ୍‌ସକଉଜ୍ ମି, ଏଇ ଆପଣଙ୍କ ନାଁ ଟା ।

ମଲ୍ଲିକା—(ଛଳ ଅଭିମାନ) ଓହୋ, ଆପଣ ବି ସେଇକଥା
କହିଲେ !
ଏଇ ନାଁଟା ସକାଶେ ତ ମୋ ଝିଅ ସାଙ୍ଗରେ ସବୁ-
ବେଳେ ଅଲୋଚନା ।
ଯେତେବେଳେ ତା'ର ଇଚ୍ଛା ହବ, କହିବ, ମମି, ତମ
ନାଁଟା ମୋ ନାଁ'ଠାରୁ ସୁନ୍ଦର ।
କି ଆଶ୍ଚର୍ଯ୍ୟ !
ଆଚ୍ଛା, କୁହନ୍ତୁ ତ, ମିଃ ସ୍ୱାମୀ ! କିପି ନାଁ'ଟା ସୁନ୍ଦର
ନୁହେଁ ?
ଏତେ ସୁନ୍ଦର ନାଁ'ଟାଏ ଦେଇ, ଅଥଚ···

ସ୍ୱାମୀ—ଅଦ୍ଭୁତ । ଖାଲି ଆପଣଙ୍କ ନାଁ'ଟା ସୁନ୍ଦର ନୁହେଁ,
ଆପଣଙ୍କ ଚେହେରାଟା ବି ।

ମଲ୍ଲିକା—ଯାଃ, ଆପଣ ବହୁତ ବଢ଼େଇ କହୁଛନ୍ତି ।
କାହିଁକି ନା, ଆପଣମାନଙ୍କ ଭଳି ବଡ଼ ବଡ଼ ଲୋକ-
ମାନଙ୍କର ଆଖିକି ସେମିତି ସବୁ ଭଲ ଜଣାପଡ଼େ ।

ସ୍ୱାମୀ—ମୋତେ ସେମିତି ବୁଝିବେନି ।
ଆପାତତଃ ଯୋଉ କଥାରେ ମୂଲ୍ୟ ନ ଥାଏ, ସେଭଳି
କଥା ମୁଁ କୁହେ ନାହିଁ ।

ସୁପ୍ରିୟା—ଆପଣଙ୍କର ମୂଲ୍ୟ ଅମୂଲ୍ୟ କଣ ?

ରଜା ବାଦ୍‌ଶା ଲୋକ ସ୍ୱଭାବରେ ଯାହା ମୁଣ୍ଡକୁ ଉଠିଲା

ତା' କହିଦେଲେ—

ସ୍ୱାମୀ—କାହିଁକି, ଆଜ୍ଞା ! ରଜା ବାଦ୍‌ଶାହା ବୋଲି କହି

ଅପମାନିତ କରୁଚନ୍ତି ?

ହେଇ ହେଇ, ଗୋଟାଏ ପ୍ରାଇଭେଟ୍ ଫାର୍ମର···

ସୁପ୍ରିୟା—ଥାଉ ଥାଉ, ସେକଥା କହିବେନି ।

ସେ ଫାର୍ମଟା ନିଶ୍ଚୟ କୌଣସି ଗୋଟାଏ ଫରେନ୍···

ସ୍ୱାମୀ—ତା' ଅବଶ୍ୟ, ଆମେରିକାନ୍ କନ୍‌ସର୍ଣ୍ଣ ।

ସୁପ୍ରିୟା—ସେଥିରୁ କଣ ମୁଁ ଜାଣିଲିନି···

ସ୍ୱାମୀ—ମିଷ୍ଟର ପଟ୍ଟନାୟକ ?

ସୁପ୍ରିୟା—ପୂଜାରେ ବସିଚନ୍ତି ।

ଆହୁରି ପାଖାପାଖି ଘଣ୍ଟାଏ ।

ସ୍ୱାମୀ—ଆରେ ବାବା !

ଏ ତ ରୀତିମତ ତପସ୍ୟା !

(ଭିତରୁ ଚା'ନେଇ ଆସିଚି ବଳଭଦ୍ର । କପେ ଆଣିଚି ।

ହଠାତ୍ ଚା ପାଖକୁ ଆଗେଇଯାଇଚି ସୁପ୍ରିୟା । କପ୍‌ଟା

ଉଠେଇ ବଢ଼େଇଚି ସ୍ୱାମୀଙ୍କୁ)

ଏଁ, ତା'ମାନେ, ଚା' ରେଡ଼ି !

ଆସି ପହଞ୍ଚିବା ମାତ୍ରେ ?

ଆଉ ଆପଣ ?

ସୁପ୍ରିୟା—ମୁଁ ?

ହଁ, ମୁଁ ।

ବଳି, ଆଉ କପେ କରିଆଣ ତ ! (ଆଦେଶ ଭଙ୍ଗୀରେ)

(କଲ ବ୍ଲକଗଲ୍ ଭିତରକୁ)
ଆଚ୍ଛା, ଆପଣଙ୍କ ଅଫିସଟା କୁଆଡ଼େ, କହିଲେ ?

ସ୍ୱାମୀ—ସେଇଠାହିଁ ସମସ୍ୟା, ସୁପ୍ରିୟା ଦେବୀ !
ପୋଡ଼ଟି ଅଫିସ ଅଛି, ସେ ଜାଗାଟା କହିବାକୁ ଲଜ ମାଡ଼ୁଛି ।
ନିତାନ୍ତ congested ହୋଇଗଲା ।
ମୋ ଫାର୍ମର ଅଫିସ ପାଇଁ ଏଇଭଳି ଗୋଟ ଏ ଘର ପାଇ ହୁଅନ୍ତା,
ତାହେଲେ ଠିକ୍ ହୁଅନ୍ତା ।

ସୁପ୍ରିୟା— ଆପଣ କଣ ଘରଟା ଦେଖିସାରିଲେଣି ?

ସ୍ୱାମୀ—ନା, ଏଇ ବାହାରୁ ବା ଏଇଠୁ ଯାହା ଦେଖୁଛି ।
ଏଇ ଘର୍‌ଟା ପାଇଁ ମୁଁ ହଜାରେ ଟଙ୍କା ଦବାକୁ ପ୍ରସ୍ତୁତ ଅଛି, ସୁପ୍ରିୟା ଦେବୀ !

ସୁପ୍ରିୟା—(ମୂର୍ଦ୍ଧ ଶୁଖେଇ) ତା ଆପଣ ଦେଇପାରିବେ ନିଶ୍ଚୟ ।
ଜାଣନ୍ତି, ମିଷ୍ଟର ସ୍ୱାମୀ ! ଏଇ ଜାଗାରେ ଗୋଟାଏ ଘର, ଚାରିଆଡ଼େ ଖୋଲା ପବନ, କୋଠା ଉପରକୁ ଗଲେ ନଗର ହିତନ୍ତବସ୍ତାରି ଦୃଶ୍ୟ, ଗୋଟାଏ ବହୁ ଦିନର ସ୍ୱପ୍ନ ।

ସ୍ୱାମୀ—ସେ ସ୍ୱପ୍ନ ଆପଣଙ୍କର ସଫଳ ହୋଇଗଲା ତ !

ସୁପ୍ରିୟା—ହେଲା ଆଉ କୋଉଠି ? ଏଇ ତ ଆପଣମାନଙ୍କ ଭଳି ଲୋକ ହଜାରେ ଟଙ୍କା···

ସ୍ୱାମୀ—ନା, ନା, ସୁପ୍ରିୟା ଦେବୀ ! ମୋର ଗୋଟାଏ ପରି-କଳ୍ପନା କଣ, ଜାଣନ୍ତି ? ତଳଟା ଦୂର୍‌ଦୂରେ ଏଇଭଳି

ଗୋଟାଏ କୋଠାର ମୁଁ ନେଇନଥିଲି । ଉପରଟାରେ
ଆପଣ ରୁହନ୍ତେ ।

ସୁପ୍ରିୟା— ମିଛ କଥା । ସେଇଟା ଆପଣ ମୋତେ ଶୁଣାନ୍ତେ ନାହିଁ ।
କାରଣ ଆପଣ ଉପରଟା ବି ନେଇ ନିଜ ପିଲାପିଲିଙ୍କ
ସହିତ…

ସ୍ୱାମୀ—ଆଦୌ ନୁହେଁ, ଆଜ୍ଞା ! ସେ ପ୍ରଶ୍ନ ଉଠିବାର ନାହିଁ ।

ସୁପ୍ରିୟା—ତା'ମାନେ, ଆପଣ କଣ ବିବାହ କରିନାହାନ୍ତି ?

ସ୍ୱାମୀ—Forced Bachelor, ଅର୍ଥାତ୍ ବିବାହ କରିଚି,
କିନ୍ତୁ ବାପା ମା'ଙ୍କୁ ଦେଖାଶୁଣା କରୁଥିବା ଯୋଗୁ
ସେମାନଙ୍କୁ ଆଉ ଦେଶରୁ ଆଣିହବନି ।

ସୁପ୍ରିୟା—(ଟିକିଏ ଭାବି) ଆଚ୍ଛା, ଯଦି ସେଇମିତି ଗୋଟାଏ
ପ୍ରସ୍ତାବ କରାଯାଏ…

ସ୍ୱାମୀ—(ଆଗ୍ରହ) ଆପଣ ବିଶ୍ୱାସ କରନ୍ତୁ, ମୁଁ ଆଉ ତିନିଶହ
ଅଧିକା ଦବାକୁ ମଧ୍ୟ ପ୍ରସ୍ତୁତ ଅଛି ।

ସୁପ୍ରିୟା – ତା'ହେଲେ ଆସନ୍ତୁ, ଭିତରୁ ସବୁଆଡ଼େ ବୁଲି ଦେଖି-
ଆସିବା, ଆପଣଙ୍କର ଏଇ ପ୍ରସ୍ତାବଟା କାର୍ଯ୍ୟକାରୀ
କରିହବ କି'ନା ।

(ଭିତରଆଡ଼କୁ ଚାଲିବେଳେ ଭିତରୁ ପ୍ରବେଶ କରିଚି
ନଶୀଥ)

ସୁପ୍ରିୟା—ସ୍ୱାମୀ ! ଇଏ ନଶୀଥ, ଅନ୍ତତଃ ଆଉ କହିବା ଦରକାର
ନାହିଁ ଯେ, ମିଷ୍ଟର ପଟ୍ଟନାୟକଙ୍କର ଯୋଗ୍ୟତମ
ଦାୟାଦ । ଇଏ ଆମେରିକାରୁ ଫେରିଚି—ଏଇମାତ୍ର
ଅଳ୍ପ କେଇଦିନ ତଳେ ।

(ନମସ୍କାର କରିଚି ନଶୀଥ)

ନଶୀଥ—ଆଜ୍ଞା, ନମସ୍କାର ।

ସ୍ୱାମୀ—ନମସ୍କାର, ନମସ୍କାର । ବାପାଙ୍କ ତରଫରୁ ଆପଣ ଆମମାନଙ୍କର ତର୍ଚ୍ଚା କରିବେ ନା କଣ ?

ନଶୀଥ—ଆଜ୍ଞା, ନା, ବାପା ଏଇ ବର୍ତ୍ତମାନ ପ୍ରାୟ ଆସିଯିବେ ।

ସ୍ୱାମୀ—ଓ, ବର୍ତ୍ତମାନ ଆସିଯିବେ ?

ସୁପ୍ରିୟା—ବର୍ତ୍ତମାନ, ମାନେ ? (ଘଣ୍ଟା ଦେଖି) ଅଦ୍ଧର ଘଣ୍ଟାଏ ତ ?

ସ୍ୱାମୀ—ହଁ, ହଁ, ଘଣ୍ଟାଏ ଆଉ କେତେବେଳ ? ଏଇ, ମାନେ, ଗପ କରୁକରୁ କଟିଯିବ ।
ଆମେ ତ ଟିକେ ଆଗରୁ ହିଁ ଚାଲିଆସିଛୁ ।

ସୁପ୍ରିୟା—ଆଉ କେହି ଆସିଲେନି ଏଯାଏଁ ?

ନଶୀଥ—ହଁ, ଆସିଯିବେ ପ୍ରାୟ...

ସୁପ୍ରିୟା—ଆଚ୍ଛା, ନଶୀଥ ! ଆମେ ଟିକଏ ଭିତରଆଡ଼ୁ ବୁଲି-ଆସୁଁ ।

ନଶୀଥ—ହଁ, ମୁଁ ଏଇଠି ଅପେକ୍ଷା କରୁଛି, ଆଉ କାଳେ କିଏ ଆସିବେ ।
(ସ୍ୱାମୀ ଆଉ ସୁପ୍ରିୟା ଚାଲିଗଲେ ଭିତରକୁ । କିଛି ସମୟ ଚିନ୍ତିତ ଭାବରେ ବୁଲୁଛି ନଶୀଥ—ତା'ପରେ ଡାକୁଛି ବଳକୁ)

ନଶୀଥ—ବଳ, ବଳ ! (ବଳ ଆସିଛି)
କଣ ଆଜି ହବ କି ? କାହିଁକି ଏତେ ଲୋକ ଆସିବେ ସବୁ ?

ବଳ—ମୁଁ କେମିତି ଜାଣିଲି, ଆଜ୍ଞା ? ମତେ ତ କିଛି କହି-ନାହାନ୍ତି !

ନଶୀଥ—କଣ ଯେ ଦନେ ଦନେ ବାପାଙ୍କ ମୁଣ୍ଡକୁ ଜୁଟେ···
ସକାଳୁ ସକାଳୁ କୁଆଡ଼େ ଆସିବେ କେତେ ଲୋକ !
ଅଚ୍ଛା, ତୁ ଯା, ହୁଏତ ଦରକାର ହୋଇପାରେ,
ଅଳ୍ପ କଛୁ ଜଳଖିଆ କରିବାର ମଧ୍ୟ ବ୍ୟବସ୍ଥା କରିଥା ।
କାଳେ ହଠାତ୍ ଫର୍ମାସୀ କରିପକେଇବେ ଛ ପୁଣି
ମହା ଅଡ଼ୁଆ ।

ବଳି—ଅଜ୍ଞା !

(ଯାଇଛି ଭିତରକୁ । ନଶୀଥ ବସିଛି । ଟିକଏ ପରେ
ଆସିଲେ ଜଣେ ବ୍ୟକ୍ତି—ବୟସ ପ୍ରାୟ ଚାଳିଶ ପାଖା-
ପାଖି—ପୁରୁଣାକାଳିଆ ପ୍ୟାଣ୍ଟ ସାର୍ଟ ପିନ୍ଧା, ହାତରେ
ଗୋଟାଏ ଫାଇଲ)

ଭଦ୍ରଲୋକ—ଆଜ୍ଞା, ଜୁହାର ! ମୁଁ ବୋଧହୁଏ ନମ୍ବର ଦୁଇ ?

ନଶୀଥ—(ନମସ୍କାର କରି) ଆଜ୍ଞା ନା, ତିନ ।

ଭଦ୍ରଲୋକ—କନ୍ତୁ ସେଥିପାଇଁ ଏ ଘରର ମାଲିକ ଦାୟୀ । ବୁଝିଲେ
ନା, ନ ହେଲେ ମୁଁ ପ୍ରଥମେ ଆସି ପହଞ୍ଚିଥାନ୍ତି ।
ଘରଟା ଚେଷ୍ଟା କରି ପାଇବାକୁ ହେଲା ।

ନଶୀଥ—ବ୍ୟସ୍ତ ହେବାର କଛି ନାହିଁ । ପାଇଚନ୍ତି ତ !
ତା'ଛଡ଼ା ବିଶେଷ ଡେରି ହୋଇନ ଯେ ।

ଭଦ୍ରଲୋକ—ନାଇଁ, ମୋର ତ ବିଶେଷ କଛି କଥା ନାଇଁ ।
ମୁଁ ବି ଆଜି ବେଶୀ ସମୟ ରହିପାରିବନି ।
ମୋର ମାଲିକଙ୍କ ତରଫରୁ ମୁଁ ଆସିଛି ।
ସେ ମତେ ଖାଲି ତ ପଦେକଥା ପଚାରିଦେଇ ଯିବାକୁ
କହିଚନ୍ତି, ଆଉ—

ନଶୀଥ—ଓହୋ, ତା'ମାନେ, ସେ ନଜେ ଆସିନାହାନ୍ତି ?

ଭଦ୍ରଲୋକ—ଏକା କଥା ।
ମୁଁ ଆସିଲେ ଯାହା, ସେ ଆସିଲେ ବି ସେଇଆ ।
ମୁଁ ତାଙ୍କର Store accountant, Manager
କହିଲେ ବି ଚଳିବ, ଆଜ୍ଞା ! ମୋ ନାଁ ଜଗଯାଶ ଦୁବେ ।

ନଶୀଥ—ଓହୋ, ଆଜ୍ଞା ଆଚ୍ଛା । ସେ ଆସିଥିଲେ ଠିକ୍ଏ···

ଜଗଯାଶ—ସେ କୁଆଡ଼େ ଯାଆନ୍ତି ନାହିଁ, ଆଜ୍ଞା !
ମତେ ପଠେଇଚନ୍ତି ଖାଲି କେଇଟା ଜିନଷ ବୁଝିବାକୁ ।
ସତାବନ କୁକୁଡ଼ା, ପାଞ୍ଚଶହ ପେଟି, ଆଉ ଦୁଇଟା
ଲିଲ୍ୟାଣ୍ଡ ଗାଡ଼ି ।

ନଶୀଥ—(ବୁଝି ନ ପାରି) ବୁଝିପାରିଲନ ବୋଧହୁଏ ।

ଜଗଯାଶ—ମୋ ମାଲିକ ଦଳପତି ସିଂହର ହୁକୁମ ଯେ, ଘର
ସାମନାରେ ଦ'ଟା ବଡ଼ ବଡ଼ ଗାଡ଼ି ଠିଆ ହୋଇ ଠିଙ୍
କାଟି ରହିପାରିବ ।
ଘର ଭିତରେ ପାଞ୍ଚଶହ ପେଟି ଜମାହବା ପାଇଁ ଜାଗା
ଥିବ, ଏବଂ ଘର ପଛରେ ମାଣ ସତାବନଟି କୁକୁଡ଼ା
ରହିବାପାଇଁ, ଚରିବାପାଇଁ ପ୍ରଚୁର ଜାଗା ଥିବ ।
ବାସ୍, ସେତିକ ହେଲେ ହେଲା ।

ନଶୀଥ—ଆପଣ ବୋଧହୁଏ କୋଉ ଭୁଲ ଜାଗାକୁ ଚାଲି-
ଆସିଚନ୍ତି ।

ଜଗଯାଶ—ମାନେ ?
ଭୁଲ କରିବାକୁ ପଡ଼ିବନ ବୋଲି ମୁଁ ଠିକ୍ ହୋଇ
ଆସିଚି ।
ତେଣୁ ଏଇ ଦ'ପଦ ଖଣ୍ଡେ କଥା ସରିଲେ ଚାଲିଲି ।

ଏଥିପାଇଁ ଅନ୍ୟୂନ କେତେ ଟଙ୍କା ଦରକାର, ସେ ଇଣ୍ଟା
ମଧ୍ୟ information ନେଇଯିବାକୁ ପଡ଼ିବ ।
ଏବଂ ମୋର ବସ୍‌କୁ କନ୍ଭିନ୍ସ କରିବାକୁ ପଡ଼ିବ ।

ନଶୀଥ—ଆଚ୍ଛା, ଏ ସନ୍ତାବନଟି କୁକୁଡ଼ା ବୋଲି···

ଜଗଦୀଶ—ଆଜ୍ଞା, ସନ୍ତାବନ ।
ପଞ୍ଚଶହ ପେଟିରୁ ଦଶ୍ଚକ ଗୋଟାଏ ଯୋଡ଼ାଏ ଡ଼ଶ
ହୋଇପାରେ, ହେଲେ କୁକୁଡ଼ାରୁ କମିବାର ପ୍ରଶ୍ନ
ନାହିଁ ।
ବରଂ ବଢ଼ିବ ।
କିନ୍ତୁ ମତେ ସେ କନ୍ଭିନ୍ସ, ଆଜ୍ଞା,
ତାଙ୍କ ପାଇଁ ତାର ଫେନ୍‌ସିଙ୍ଗ୍ ହବ ।
ସେମାନଙ୍କୁ ବହୁତ ଯତ୍ନରେ ରଖାଯିବ ।

ନଶୀଥ—ଏଇ ବିଷୟରେ କଣ ସିଂ ସାହେବଙ୍କର ଆଗରୁ କଥା-
ବାର୍ତ୍ତା ହୋଇଥିଲା ?

ଜଗଦୀଶ—ହେଲା କୋଉଠି, ଆଜ୍ଞା ?
କହିଲି ପରା, ଟେଲିଫୋନ ଖରାପ ଥିଲା ।
ନ ହେଲେ ଆପଣମାନଙ୍କ ଭଳି ମତେ ଆଉ ଏଠିକି
ଆସିବାକୁ ପଡ଼ି ନ ଥାନ୍ତା ।
କେତେ ଏନ୍‌ଗେଜ୍‌ମେଣ୍ଟ ମୋର !

ନଶୀଥ—ସତେ ?

ଜଗଦୀଶ—ଆଜ୍ଞା, ଆପଣ ବିଶ୍ୱାସ କରିବେନି,
ଟ୍ରକ ଆସିଗଲା,
ଧଡ଼ାଧଡ଼ ମାଲ ଗଦା ହୋଇଗଲା,
ତା'ର ଆକାଉଣ୍ଟ ରଖ ।

ଠିକ୍ ଆସିଲା କି ନା—ଠିକ୍ ଲୋଡ୍ ହେଲା କି ନା,
ଏଗୁଡ଼ା ହେଲା ରୁଟିନ୍ କାମ ।
ବେ'ରୁଟିନ୍ କାମ ପୁଣି ତା'ଠଉଁ ବେଶୀ ।

ନଶୀଥ—ବେରୁଟିନ୍ କମ ? ସେଇଟା ପୁଣି କଣ ?

ଜଗପାଣ—ଏଇ ଟ୍ରକ ଆସିଲା,

ତା ପଛେ ପଛେ ହୁଏତ ଗୋଟାଏ ମଟରସାଇକଲ
କୋଉ ପୁଲିସ ସାହେବଙ୍କର—
କାଇଁକି ସେ ଟ୍ରକବାଲା ଏମିତି ଜୋରରେ ଚଳଉଥିଲା,
କେମିତି ସିଗ୍‌ନାଲ୍ ବ୍ୟବହାର କରିନା ।
ବାସ୍, ତା ମାନେ, (ଉଦ୍ଧ୍ୟ ରଖି—ହ ଜରେ ଦେଖେଇ)
ବୁଝୁଥିବେ, ଆଉ କଣ ?
ପାଇଗଲେ, ଚୁଲିଗଲେ ।
ହଠାତ୍ କେବେ ଟେଲିଫୋନ୍ ଆସିଯିବ—
RTOଙ୍କ ଅଫିସରୁ କି କଲଟର ସାହେବଙ୍କ କୋଠିରୁ-
ଏଇ, ଗାଡ଼ି ଗୋଟାଏ ଅମୁକ କାମ ପାଇଁ ଦରକାର,
କିଛି ନ ହେଲେ କୋଉ କଲେଜ ପିଲାଙ୍କ ଦୌରାତ୍ମ୍ୟ,
ଗଣେଶ ପକେଇବେ, ସରସ୍ୱତି ପକେଇବେ,
କି ସିଲ୍‌ଭ ଧରି ବୁଲିବେ ।
ଏଇ ଗୁଡ଼ାକ comply କରୁ କରୁ
to be more clear, ଆଜ୍ଞା,
ଇଚ୍ଛା ହୁଏ, ଏସବୁ ବ୍ୟବସାୟ ବନ୍ଦ କରିଦବାକୁ ।

ନଶୀଥ—ହଁ, ତା ସତ କଥା ।

ଆଚ୍ଛା, ଆପଣ ବସନ୍ତୁ ।
ମୁଁ ଅନ୍ୟମାନଙ୍କୁ ଡାକଦଉଚ ।

ଜଗଦୀଶ—ତା'ମାନେ, ଆପଣ କ'ଣ ?

ନଶୀଥ—ମୁଁ ନଶୀଥ,
ଆପଣ ଯାହାଙ୍କ ପାଖକୁ ଆସିଚନ୍ତି ମୁଁ ତାଙ୍କ ପୁଅ ।

ଜଗଦୀଶ—ଓହୋ !
ଆରେ, ତା'ହେଲେ ଆପଣ ତ ବୁଝିଁଲେ କହିଦେଇ-ପାରିବେ ।

ନଶୀଥ—ନାଇଁ ନାଇଁ, ମୁଁ କଛି ଜାଣିନାଇଁ ।
ଆପଣ ଅପେକ୍ଷା କରନ୍ତୁ ।

ଜଗଦୀଶ—ଖାଲି ଗୋଟାଏ କଥା କୁହନ୍ତୁ ତ,
ମୁଁ ଆଠଶହରୁ ହଜାରେ ଭିତରେ ରହିଲେ ଚଳିବ ?

ନଶୀଥ—ମୁଁ କଛି ଜାଣିନ ପରା !
ଆପଣ ଅପେକ୍ଷା କରନ୍ତୁ ।
ମୁଁ ଚା' ପଠେଇବାର ବନ୍ଦୋବସ୍ତ କରୁଚ ।
(ଭିତରକୁ ଯାଇଚ ନଶୀଥ । ସେଠି ବସିରହିଛ ଜଗଦୀଶ । ତା'ପରେ ଠିଆହେଇ କେତେ ପେଟି ରହି-ପାରିବ ହିସାବ କରୁଚ । ଏତକବେଳେ ଭିତରକୁ ପ୍ରବେଶ କଲେ ଜଣେ ତରୁଣୀ—ବେଶ୍ ଆଧୁନିକା । ବେଶ୍ ଡରିଯାଇଥିବା ଭଳି ଜଣାପଡନ୍ତି । ପଛପଟ ବଗିଚ୍ଛ ବାଟଦେଇ ପ୍ରବେଶ କଲେ)

ତରୁଣୀ—ଟିକେ ବାହାର କବାଟଟା ବନ୍ଦ କରିଦେବେ ।

ଜଗଦୀଶ—ଦୁର୍ଭାଗ୍ୟ ।

ତରୁଣୀ—କଣ କହିଲେ ?

ଜଗଦ୍ଘଣ—ଆପଣଙ୍କ ଅର୍ଡ଼ର୍‌ରଲ ଭଳ ମୁଁ ଦେଖାଗଲ···?

ତରୁଣୀ—(ଅପ୍ରସ୍ତୁତ) ନା ନା ମୁଁ ଏମିତି କହୁଲ ।

ଆଚ୍ଛା, ମମି କାହିଁ ?

ଜଗଧାଶ—କେମିତି ଜାଣିଲେ ଅଚ୍ଛା, ଆପଣଙ୍କ ମମିର ଖବର
ମୋର ରଖିବା କଥା ବୋଲି ?

ତରୁଣୀ—ଆପଣଙ୍କର ଶିଷ୍ଟତା ଜ୍ଞାନ ଟିକେ ନାହିଁ ?

ଜଗଧାଶ—କେଜାଣି !
ଆପଣଙ୍କର ଶୀଳତା ଜ୍ଞାନ ଯେତିକ ଅଛି ।

ତରୁଣୀ—ଇସ୍ !
ଏଠିକ ମମି କାହିଁକ ଯେ ଆସିଲି !

ଜଗଧାଶ—ହୁଏତ ଭୁଲରେ ।

ତରୁଣୀ—ଆପଣଙ୍କ ପରିଚୟଟା ପାଇପାରେଁ ?

ଜଗଧାଶ—ନିଜ ପରିଚୟ ନ ଦେଇ···

ତରୁଣୀ—ମୁଁ ଲିପି ପଟ୍ଟନାୟକ,
ମିଷ୍ଟର ପଟ୍ଟନାୟକ, ତା'ମାନେ···

ଜଗଧାଶ—(ହଠାତ୍ ଚମକିପଡ଼ି) ଆରେ, ତା' ମନେ ଆପଣ
ନିଶୀଥ ବାବୁଙ୍କ···
ଇସ୍, ମୁଁ କେତେବଡ଼ ଭୁଲ କରିପକେଇଲି !
ଦେଖନ୍ତୁ, ଆଜ୍ଞା !
ଜୀବନରେ ସବୁବେଳେ ଏଇ unusual forum
ଗୁଡ଼ାକ ସହିତ deal କରି କରି usual forum
ରେ ବି absurd ଗପିବା ଆରମ୍ଭ କରିଚୁଁ ଆମେମାନେ ।
ଏଇ ଦେଖନ୍ତୁ,

ଆପଣ ହୁଏତ ଏ ଘରର ମାଲିକ···

ଲିପି—ହୋଇନ, ହୋଇପାରେ ।

ଜଗଦୀଶ—ସେଇ ଏକା କଥା ।

କିନ୍ତୁ ମୁଁ ଠିକେ ଚିନ୍ତା କରି ଦେଖିଥିଲେ ହୁଏତ ଏତେ
ବଡ଼ ଭୁଲ୍ ହୋଇ ନ ଥାନ୍ତା ।
କାରଣଟା ହେଲା,
ମୁଣ୍ଡରେ ତ ଅନ୍ୟ କଥାଟା ଖେଳୁଚି,
କାଳେ ହିସାବ ଭୁଲ ହୋଇଯାଇପାରେ,
ତା'ମାନେ, ଗୁଣକରିଟା ଆଉ ରହିବନି ।

ଲିପି—ହିସାବ ? ଗୁଣକରି ?

ଜଗଦୀଶ—ଆଗରେ ଦୁଇ,
ଭିତରେ ପାଞ୍ଚଶ,
ପଛରେ ସତାବନ,
ଖୁବ୍ ଶୀଘ୍ର କିଛି ଅଧିକ ହବାର ସମ୍ଭାବନା—
ତେଣୁ ଆଠଶ'ରୁ ହଜାରେ ଭିତରେ

ଲିପି—ଏଗୁଡ଼ା କଣ ?

ଜଗଦୀଶ—ଅନେକ ବସ୍ତୁର ସମାହାର, ଆଜ୍ଞା !
ଦୁଇଟା ହେଲା ଟ୍ରକ୍,
ପାଞ୍ଚଶ'ଟା ହେଲା ପେଟି,
ଆଉ ସତାବନଟା ହେଲା କୁକୁଡ଼ା ।
ତା'ଛଡ଼ା, ଆଠଶହରୁ ହଜାରେ ହେଲା ଟଙ୍କା ।

ଲିପି—ଆଚ୍ଛା, ଆପଣଙ୍କ କଥା ମତେ ବହୁତ ଭଲ ଲାଗୁଚି ।
ମୁଁ ସେଗୁଡ଼ା ସବୁ ଶୁଣିବି ଯେ,
ଖାଲି ଆପଣ ସେ ବାହାର ଦରଜା ଠିକେ ଯଦି···

ମାନେ, କ୍ଷମା କରିବେ, ମୁଁ କାହିଁକି କହୁଚି କି,
( କ'ଣ ଶୁଣିପାରି ) ହେଇ, ବୋଧହୁଏ ସେମାନେ
ଆସିଗଲେ ।
ଆପଣ କବାଟଟା···
ଜଗଧାଶ—କଣ ହେଇଚି, ଆଜ୍ଞା !
ଲିପି—ଦୟାକରି କବାଟଟା···
(କବାଟ ବନ୍ଦକରି ଦେଇ ଜଗଧାଶ ଆସିଚି । ଆଶ୍ଚର୍ଯ୍ୟ
ହେଇ ତା'ମୁହଁକୁ ଗୁହିଁଚି)
ଦଳେ ଛତର ଟୋକା···
ଜଗଧାଶ—ଓହୋ, ତାଙ୍କୁ ଡର କବାଟ ଦଉଚନ୍ତି ?
ସେମାନଙ୍କର ଛତରମି, ଆଜ୍ଞା, ସେଇ ରାସ୍ତା ଉପରେ ।
କିନ୍ତୁ ଆପଣ ଘର ଭିତରେ ଡରିବାର କିଛି ମାନେ
ହୁଏନି ।
ଲିପି—ଏଁ, ଡରିବି ?
ନା, ଠିକ୍ ସେଇଆ ନୁହେଁ, ମାନେ, ଆପଣ ଭାବୁଚନ୍ତି···
ଜଗଧାଶ—କିଛି ବ୍ୟସ୍ତ ହୁଅନ୍ତୁନି,
ଆସିଗଲେ ବି ମୁଁ ତାଙ୍କୁ ସାବାଡ଼ କରିଦେଇଥାନ୍ତି !
ଆଜ୍ଞା, ବୁଝିଲେ ନା,
ସବୁଦିନେ କିଛି ନା କିଛି ଏଇପରି ଲୋକଙ୍କ ସଙ୍ଗରେ
ମୋର ସାକ୍ଷାତ ହୁଏ ।
ତେଣୁ ମୋତେ କଷ୍ଟ କରିବାକୁ ପଡ଼େ ନ ଥା'ନ୍ତା ।
ଲିପି—ଯାହାହଉ, ବର୍ତ୍ତମାନ କିଛିଟା ଆସ୍ୱସ୍ତି ମିଳିଗଲା ।
ଜଗଧାଶ—ଆଚ୍ଛା, କଣ ହେଇଚି, କହିଲେ ?
ଲିପି— ଆପଣ କୁହନ୍ତୁନା !

ଏଇ ଧରନ୍ତୁ, ବାଟରେ ଜଣେ ଲୋକ ବସିଛି ।
ଗାଡ଼ି ଆଇଲାବେଳେ କି ଗଲାବେଳେ ଯଦି ଏପାଖ
ସେପାଖ ହୁଏ,
ତାହେଲେ ଦୁର୍ଘଟଣା ପାଇଁ ଦାୟୀ କିଏ ?

ଜଗଦୀଶ—ତା'ମାନେ, ଆପଣ···

ଲିପି—(ଲୁଚେଇବାକୁ ଯାଇ)
ମୁଁ, ହେଃ, ନା-ନା, ଗୋଟାଏ ଉଦାହରଣ ଦେଲି ।
(କଲିଂବେଲ୍ ବାଜିଛି । ଜଗଦୀଶ କବାଟ ଖୋଲିବାକୁ
ବାହାରିଛି । କିନ୍ତୁ ଲିପି ତାକୁ ବାରଣ କରିଛି)

ଜଗଦୀଶ—ଆରେ, ବୁଝୁନାହାନ୍ତି, କାଲେ କିଏ ତାଙ୍କ ଘରର
ଲୋକ ହେଇଥିବେ ।

ଲିପି—ନାଇଁ, ଆପଣ ମୋଟେ ଖୋଲନ୍ତୁନି ।

ଜଗଦୀଶ—ଠିକେ ବୁଝନ୍ତୁ ।

ଲିପି—କିଛି ବୁଝିବା ଦରକାର ନାହିଁ, ଆପଣ ବସନ୍ତୁ ।
(କଲିଂବେଲ୍ ବାଜିଚାଲିଛି)

ଜଗଦୀଶ—ଆଚ୍ଛା, ଆପଣ ଭିତରକୁ ଟିକେ ଚାଲିଗଲେ । ମୁଁ ତାଙ୍କୁ
କେମିତି ବିଦା କରୁଛି, ଦେଖନ୍ତୁ ।

ଲିପି—ଏଁ, ହଉ ତା'ହେଲେ ?
କିନ୍ତୁ ଯଦି ନ ଯା'ନ୍ତିବେ ?

ଜଗଦୀଶ—ବାଧ୍ୟ ହେଇ ଆପଣ ଆସିବେ ।

ଲିପି—କିଛି କହି ନ ପାରି (ଚାଲିଗଲା ଟିକେ ଆଡ଼ୁଆଳକୁ ।
ଜଗଦୀଶ ଯାଇ କବାଟ ଖୋଲିଛି । ପ୍ରବେଶ କରିଛି
ଜଣେ ଯୁବକ । ସଦ୍ୟ କଲେଜ ଛାଡ଼ିଲା ଜଣାପଡ଼ୁଛି)

ଜଗନ୍ନାଥ—କିଏ ଆପଣ ? (ମାରବ) କିଏ ଆପଣ ? ପଚାରୁଛ ପରା ?

ତରୁଣ—(ଖାତିରନ୍ କରି ଭଙ୍ଗ) କାହିଁକି ପଚାରୁଛନ୍ତି ?

ଜଗନ୍ନାଥ—ଆପଣ କିଏ ?

ତରୁଣ—ଆପଣ କିଏ ?

ଜଗନ୍ନାଥ—ମୁଁ, ମୁଁ ଏ ଘରର, ମାନେ, ଘର···

ତରୁଣ—ମାଲିକ, ନା ଆସିଚନ୍ତି ?

ଜଗନ୍ନାଥ—ଦ'ଟା ଭିତରୁ ଗୋଟାଏ କଥା ।

ତରୁଣ—ସେ କାର୍ଟା କାହାର ?

ଜଗନ୍ନାଥ—ଧନଞ୍ଜୟଙ୍କ ଆମର ।

ତରୁଣ—ସେ ଯିଏ ଚଳଉଥିଲେ, ଆପଣଙ୍କର କିଏ ?

ଜଗନ୍ନାଥ—ମୋର···ମୋର···

ତରୁଣ—ଆପଣଙ୍କର ?

ଜଗନ୍ନାଥ—ମାନେ,

(ପ୍ରବେଶ କରନ୍ତି ନଶୀଥ । ତରୁଣଙ୍କୁ ଦେଖି)

ନଶୀଥ—କିରେ, ସବୁ କୁଆଡ଼େ ?

ସୁବ୍ରତ—ନଶୀଥଭାଇ, ନମସ୍କାର ।

ନଶୀଥ—ନମସ୍କାର ।

ସୁବ୍ରତ—ତମଘରକୁ କିଏସବୁ ଆସିଚନ୍ତି କି ଆଜି ?

ନଶୀଥ—ବହୁତ ଲୋକ । କାହିଁକି ?

ସୁବ୍ରତ—ନାଇଁ, ତା'ହେଲେ ଆଉ କହିବା ଦରକାର ନାଇଁ ।

ନଶୀଥ—ହେଲା କଣ ?

ସୁବ୍ରତ—ମୁଁ ଭାବିଥିଲି, ସେ ବୋଧହୁଏ ନେଇଆଇଲା । ହେଲେ···

ନିଶୀଥ—କଣ ହେଲା ?

ସୁବ୍ରତ—ଆମେସବୁ ଠିଆ ହୋଇଥିଲୁଁ ଦଳେ କଲେଜ ସାଙ୍ଗ ।
ହେଇ white feat ଗାଡ଼ିଟା ଏତେ ଜୋରରେ ପାସ୍
କରି ଆସିଲା ଆମ ପାଖ ଦେଇ ଯେ,
ସେ ପାଖରେ ଜମିଥିବା ସବୁଜକ ପାଣିଛିଟା ପଡ଼ି
ଆମଭିତରୁ ଅଧେ ପରା କାଦୁଅ ହୋଇଯାଇଚନ୍ତି ।

ନିଶୀଥ—ସତେ ? କିନ୍ତୁ ହ୍ୱାଇଟ୍ ପିଆଟ୍‌ରେ ତ ଆମର
କେହି...

ସୁବ୍ରତ—ମୋର ତ ସେଇକଥା ସନ୍ଦେହ ହୁଏ ।
କାହିଁକନା, ଆମେ ଦଳେ, ତା'ପଛରେ ସ୍କୁଟରରେ
ଆଉ ସାଇକେଲରେ ଗୋଡ଼େଇଲୁଁ ବୋଲି
ସେ ତମର ବଡ଼ିଗୁପଟେ ଫାଟକବାଟେ ଗାଡ଼ିଟା
ପୂରେଇଦେଲା ।
ତେଣୁ ମୁଁ ଭାବୁଚି...

ଜଗଦୀଶ—ଓହୋ, ଏଥିରେ ଭାବିବାର କଣ ଅଛି ହୋ ବାବୁ ?
ଆଗପଟେ ଜାଗା ନ ଥିଲା ବୋଲି
ବାଡ଼ିପଟ ବାଟେ ସେ ପାର୍କ କରେଇଦେଲେ ।

ନିଶୀଥ—(ବୁଝେଇବାକୁ ଚେଷ୍ଟା କରି) ଅଚ୍ଛା ଅଚ୍ଛା, ଆପଣଙ୍କ
ଗାଡ଼ି ?

ଜଗଦୀଶ—(ଦମ୍ଭରେ) ହଁ, ମୋର ଗାଡ଼ି ।

ନିଶୀଥ—ତା'ହେଲେ ହୋଇଥିବ...

(ଭିତରୁ ପ୍ରବେଶ କରିଚନ୍ତି ସୁପ୍ରିୟା ଆଉ ସ୍ୱାମୀ)

ସୁପ୍ରିୟା—କିନ୍ତୁ ଠିକେ ଜଲଦି ଆସିବେ ।

ସ୍ୱାମୀ—ଏଇ, ଜଷ୍ଟ୍ ଆସିଲି ବୋଲି ଜାଣନ୍ତୁ ।

ଖାଲି ଚେକ୍ ବହିଟା ଭୁଲିଆସିଚି । ନେଇ ଚାଲି
ଆସିବ ।
ଯଦି dv.·nce କିଛି ଦବା ଦରକାର ପଡ଼େ,
ତା'ହେଲେ ଏଇଠି ଦେଇଦେବ ।
ସୁପ୍ରିୟା—(ମୁହଁ ଶୁଖେଇ) ତା ହେଲେ ତ ଅସୁବିଧା ହୋଇଗଲା ।
ମୁଁ ତ ଆଣିନ ଟଙ୍କା···
ସ୍ୱାମୀ—ବ୍ୟସ୍ତ ହବାର କଣ ଅଛି ?
ମୁଁ ତ ଯାଉଚି ।
ଅଫିସ ଚେକ୍‌ବହି ସାଙ୍ଗରେ ମୋର ପର୍ସନାଲ ଚେକ
ବହି ମଧ୍ୟ ନେଇଆସିବ ।
ଆପଣଙ୍କ ପାଇଁ ମୁଁ ଚେକ୍ କାଟିଦେଲେ ହବନି ?
ସୁପ୍ରିୟା—ଯାଃ ! ଆପଣ ହଠାତ୍ ବହୁତ ସ୍ୱପ୍ନ ଦେଖିବସୁଚନ୍ତି ।
ସ୍ୱାମୀ—(ହସିଉଠି) ଅଚ୍ଛା, ମୁଁ ଆସୁଚି ।
(ବାହାରକୁ ଚାଲିଯାଉଚନ୍ତି ସ୍ୱାମୀ । ସୁବ୍ରତଙ୍କୁ ଦେଖି-
ପକେଇଚି ସୁପ୍ରିୟା)
ସୁପ୍ରିୟା—ନିଶୀଥ ! ତୁମ ସାଙ୍ଗ କି ?
ନିଶୀଥ—ନାଇଁ, ସେ ଆମ ଆରପାଖ କୋଠାରେ ରହନ୍ତି ।
Mr. Das, ରିଟାୟାର୍ଡ଼ ଆଇ. ଏ. ଏସ୍
ତାଙ୍କର ପୁଅ ସୁବ୍ରତ ।
ମୋର ବହୁତ ଜୁନିୟର ।
ପିଲାଟିଦିନୁ ଏଠି ଆସି ପ୍ରାୟତ ସବୁବେଳେ
ଏଇଟା ଯେମିତି ତା ପାଇଁ ପର ଘର ନୁହେଁ ।
ସୁପ୍ରିୟା—ଓ ! ଅଚ୍ଛା, କଣ ପଢ଼ୁଚ ?
ସୁବ୍ରତ—ଆଜ୍ଞା, ହଁ ।

ସୁପ୍ରିୟା—ଆଉ କୁଆଡ଼େ ? ନଶୀଥକୁ ଦେଖା କରିବାକୁ ?
ନଶୀଥ—ନା, ସେ ପରି ଦଳେ ପିଲ୍ ନେଇ ବାଜାର ।
ସେମାନେ କୁଆଡ଼େ ଠିଆ ହୋଇଥିଲେ ।
ଗୋଟାଏ ଗାଡ଼ି ତାଙ୍କର ବାଟ ଦେଇ ପାସ୍ କଲାବେଳେ
ପାଣି ଛିଟିକଚଡ଼ିଲା ଯେ, ଏମାନଙ୍କ ଲୁଗାପଟା ଖରାପ ।
ତାକୁଇ ଗୋଡ଼େଇକରି ଆସିଚନ୍ତି ।
ସୁପ୍ରିୟା—ଆଃ ! ବଜେଇଦେଲନ ହ'ଟା ଧର !
ଛିଃ, ତମେ କ କଲେଜପିଲା ହୋଇଚ ମ ?
ତମେମାନେ ଯେତକ ତମର ପୋଷାକ ଫେସନ କଥା
ଭାବୁଚ, ତାର ଯଦ ଜାଣିଗୃଏ ଦେଶର ଉନ୍ନତି କଥା
ଭାବନ୍ତ, ତା'ହେଲେ ବହୁତ କଣ୍ଟ ହୋଇପାରନ୍ତା ।
ନଶୀଥ—ନାଇଁ, ସୁବୁ ! (ଅପ୍ରସ୍ତୁତ ହୋଇପଡ଼ିଚ । ଜଗଦୀଶଙ୍କୁ
ଅନେଇ) ଦେଖନ୍ତୁ, ମୁଁ କଣ କହୁଥିଲ କ···
ସୁପ୍ରିୟା—ଶୁଣ, ନଶୀଥ ! ଆଜକାଲ ଦୁନଆରେ
ବିବେକ ବୋଲ କଣ୍ଟ ଗୋଟାଏ ଜନଷ ଥିଲା,
ତାକୁ ଅଖାଡରେ ପକେଇ ଦେବାକୁ ପଡ଼ିବ ।
ତମେ ଭାବୁଚ, ତମେ ଭଲ ହେଲେ ଦୁନଆ ଭଲ ।
ନଶୀଥ—ଓହୋ, ଗୁଡ଼ନ୍ତୁ ସେ ବଜେ କଥା ।
ଜଗଦୀଶବାବୁ, ଆପଣ କଣ୍ଟ ଭାବବେନ
ସୁପ୍ରିୟା—ଆରେ, ସେ କାଇଁ ଭାବବେ ?
(ଜଗଦୀଶଙ୍କୁ) ମୁଁ କଣ ଆଜ୍ଞା, ଭୁଲ କଥା କହିଲି ?
ଜଗଦୀଶ—ନାଇଁ ଆଜ୍ଞା, ମୁଁ ଆଉ କ'ଣ ଭାବିବ ?
ସୁପ୍ରିୟା—ଆପଣ ତ ହୋଇଥିଲେ ନଜେ ହାତ ପୂରେଇ
ବଜେଇଦେଇଥନ୍ତେ ।

ନଶୀଥ—ଅଚ୍ଛା, ସେଇଟା ତାଙ୍କ ନିଜ ଗାଡ଼ି ।
ସୁପ୍ରିୟା—ଏଁ ! (ଚମକି ପଡ଼ି) ଓ, ହଁ, ତା ଯଦି ହୁଏ...
ଜଗଦୀଶ—ମୋ'ଠେ ହବାର chance ନାହିଁ, ଆଜ୍ଞା !
ସେଇଟା ଜମା, ମୋ, ଗାଡି ନୁହେଁ ।
ମୁଁ ଲେଳଣ୍ଡ T.M.V. ଟ୍ରକର ହିସାବ ଗଣିଲିବା'ଲି ।
ମୋର ଗାଡ଼ି ହବା'ର ଜମାରୁ ଗ୍ୟାନ୍ସ ନାହିଁ ..ତଥାପି ।

ସୁପ୍ରିୟା—ସେ ଯାହାହଉ, ଆଉ ଯେ କେହି ହଉ,
ତମର ମୋଟେ ଗୁଡ଼ିବା ଉଚିତ ନ ଥିଲି ।
ଅନ୍ତତଃପକ୍ଷେ ଭଦ୍ରତା ଖାତିରରେ ସେ ଗାଡ଼ି ଅଟକେଇ
ତମର ସମସ୍ତ ଓ୍ୱାସିଂ ଚୃକ୍ କଟା ଦେଇଦବା ଉଚିତ ।
ସେଇଟା ଆପଣଙ୍କ ଗାଡ଼ି ନ ହୋଇ କମ୍ପାନୀ ବା
ଫାର୍ମର ଗାଡ଼ି ହୋଇପାରେ ।

ଜଗଦୀଶ—(ଶଢ଼ିଯାଇ) ଓହୋ ! ଆରେ ବାବୁ, ସେମିତି କଥା'କୁ
ମୁଁ ତ ହେଇଥିଲେ, ମୋଟେ ଅନେଇ ନଥାନ୍ତି ।
କାହିଁକି ସେମାନେ ରାସ୍ତାରେ ଠିଆ ହେବେ ?

ସୁପ୍ରିୟା—କି ଆଶ୍ଚର୍ଯ୍ୟ ! ରାସ୍ତାଟା ହେଇଚି ଠିଆ ହବାପାଇଁ !
ଜଗଦୀଶ—ମୋଟେ ନୁହେଁ !
ସେଇଟା ଯିବା ଆସିବା କରିବା ପାଇଁ ।
ମୋ'ଠାରୁ ଫେର୍ ପଇସା ଆଦାୟ କରିନେଇଥାନ୍ତେ ?
ସୁବ୍ରତ—(ଧମକେଇ) କଣ ହେଲି ?
ସୁପ୍ରିୟା—(ରାଗି) ନାହିଁ ନାହିଁ, ଆପଣ ଏମିତି କ'ଣ କି ?
ସୁବ୍ରତ—ବର୍ତ୍ତିମାନ ଦେଖିବେ ?
ନଶୀଥ—ଅରେ-ରେ, ଏସବୁ କଣ ହଉଚି ? ସୁବ୍ରତ !

ସୁପ୍ରିୟା—ସୁବ୍ରତ ! ତମେମାନେ କେମିତି ଯେ ଏତେ ଅିଛତ୍ୟ
ସହିପାରୁଚ, ମୁଁ ବୁଝିପାରୁନ ।
ଜଗଧାଶ—ବୁଝିପାରୁନାହାନ୍ତି ? ବୁଝେଇ ଦେଇଥାନ୍ତି । ଖାଲି
ଆପଣ ଜଣେ ଭଦ୍ରମହିଳା ବୋଲି···
ସୁପ୍ରିୟା—ଆଉ କଣ ଭଦ୍ରମହିଳା ନ ହୋଇ ଆପଣଙ୍କ ଭଳି
ଅଭଦ୍ର ପୁରୁଷ ହୋଇଥାନ୍ତି ।
ଜଗଧାଶ—(ରଗିଯାଇ) କଣ କହିଲେ ?
ନଶୀଥ—(ଅଟକେଇବାକୁ ଚେଷ୍ଟା କରୁଚ, ପାରୁନ)
ସୁପ୍ରିୟା—ମୁଁ କହୁଚ, କାଇଁକି ଆପଣଙ୍କ ଗାଡ଼ି କାଦୁଅ ଗ୍ରୁଟିବ ?
ଜଗଧାଶ—ଅଲବତ୍ ଗ୍ରୁଟିବ, ଯେହେତୁ ଆମର ଗାଡ଼ି ଅଛି ।
ସୁପ୍ରିୟା—ଇସ୍, ଭାରି ଗାଡ଼ି ଚଢ଼ିଲିବାଲି !
ସୁବ୍ରତ—କଣ ହେଲ, ଏତେ ହେମ୍ବତ୍ ? ସେ ଗାଡ଼ି ବର୍ତ୍ତମାନ
ଭାଙ୍ଗି ଚୂରମାର କରଦବୁଁ ।
ସୁପ୍ରିୟା—ହଁ, ସୁବ୍ରତ ! ତୁମେ ସେଇଆ କର ।
ନଶୀଥ—ସୁବ୍ରତ ! ସୁବ୍ରତ !
ସୁବ୍ରତ—ତୁମେ ଟିକଏ ତୁନ ହୁଅ ନଶୀଥଭାଇ,
ଲୋକଟାର ଫୁଟାଣି ଛଡ଼େଇଦଉଚ
(ବ ହାରୁ ପାଟି ହେଉଚ )
ହେଇ, ଆସିବେ ଏଥର ଫଣି ସେମାନେ । ଦେଖିବା
କେମିତି ଗାଡ଼ି ଅଛି, ଆଉ କାଦୁଅ ପକେଇବେ
ଆପଣ !
(ଜଗଧାଶ ଦଉଡ଼ିଯାଇଚ ଟେଲିଫୋନ ପାଖକୁ)
ଜଗଧାଶ—ମୁଁ ତା'ହାଲେ ପୋଲିସକୁ ଟେଲିଫୋନ କରିବ ।
ସୁବ୍ରତ—ଆରେ, ଯାଃ !

ସୁପ୍ରିୟା—(ଶଯିଭର ଉପରେ ହାମୁଡ଼େଇପଡ଼ିଶ) କଣ···?
ଏଇଟା କ'ଣ ନିଜ ଘର ଭଳି କଥାବାର୍ତ୍ତା କରୁଚନ୍ତି ?
ଏଥିରେ ଟେଲିଫୋନ କରିବାକୁ ଆପଣ କିଏ ?
(ବେଣୀ ପାଟି ହବା'ରୁ ନଶୀଥ ବାହାରକୁ ଗଲାବେଳେ)

ନଶୀଥ—ଆପଣମାନେ ଟିକେ ଚୁପ୍ କରନ୍ତୁ ଭଲ !
(ଚଳେଇଶ ବାହାରକୁ)

ସୁପ୍ରିୟା—ସୁବ୍ରତ ! ଡାକ ସେ ପିଲାମାନଙ୍କୁ ।
(ହଠାତ୍ ଦଉଡ଼ିଆସିଶ ଭିତରୁ ଲିପି । ଟେଲିଫୋନ୍ ପାଖକୁ ଆସି)

ଲିପି—(ସୁପ୍ରିୟାକୁ) ଛାଡଦିଅନା, ଟେଲିଫୋନଟା ଛାଡ଼ିଦିଅ ।

ସୁପ୍ରିୟା—କଲେ, ତୁ ଆସିଯାଇଚୁ ? କେତେବେଳେ ଆସିଲୁ ?

ଲିପି—ତମେ ଟେଲିଫୋନଟା ତାଙ୍କୁ ଛାଡିଦିଅ ।

ସୁପ୍ରିୟା—କଣ ହେଲା, ତୁ ମତେ ଆଦେଶ ଦଉଚୁ ?

ଜଗଦୀଶ—ଖାଲି ଆଦେଶ କଣ ମ, ଦରକାର ପଡ଼ିଲେ···

ଲିପି—ଓହୋ, ତମେ ଶୁଣନା ! (ସୁପ୍ରିୟାକୁ)

ଜଗଦୀଶ—ଆରେ, ସେ କିଏ ଜାଣିଚ ?
ବର୍ତ୍ତମାନ ଚାହିଁଲେ ତମକୁ ଏଘରୁ ବାହାର କରିଦେଇ-ପାରିବେ ।

ସୁପ୍ରିୟା—(ରାଗିଯାଇଶ) କ'ଣ ?
ସେ ମୋତେ ଘରୁ ବାହାରକରିଦବ ?

ଜଗଦୀଶ—ନଶୀଥବାବୁଙ୍କୁ ଦେଖିଲ ? ସେ ତାଙ୍କର···
(ଅଟକିଯା ରଖିଦେଇଶ)

ସୁପ୍ରିୟା—ଏଁ ? ତାହେଲେ ତମର ଆଗରୁ ଜଣାଶୁଣା ଅଛି ?
ହଇଲେ, ତୁ ମତେ ଏକଥା ଲୁଚେଇଚୁ ?

ଲିପି—ଓହୋ, ତମେ ମତେ ବିଶ୍ୱାସ କରିବାକୁ ଟିକିଏ ଚେଷ୍ଟା କର । ଟିକିଏ ଚୁପ୍‌କର ।

ସୁବ୍ରତ—ଚୁପ୍ କରିବ ନାହିଁ ?

ଆମର ଏତେ କଥାରେ ଯାଏ ଆସେ ନାହିଁ ।

ଅମେ ଆମର ଆସାମୀକୁ ଧରିଲେ ଗଲୁ ।

(ଲିପିପାଖକୁ ଯାଇ ଚାଲ ! ବାହାରକୁ ଚାଲ ।

ଲିପି—ଇସ୍, ଭାରି ସାହସ !

ସୁବ୍ରତ—ଚାଲ, ସେ ସମସ୍ତଙ୍କ ଆଗରେ ଏ ମୁହଁଚୋରଟା ଦେଖେଇବ ।

(ଧରିବାକୁ ଗଲାବେଳେ)

ଲିପି—ଖବରଦାର, କହୁଦେଉଚି !

ସୁପ୍ରିୟା—(ହଠାତ୍ ବଦଳିପଡ଼ି) ଏ-ଏ, ଇଏ କଣ ? କହୋ, ତମର ତ ଭାରି ସାହସ !

ସୁବ୍ରତ—(କିଛୁ ବୁଝି ନ ପାରି) ମୁଁ···ମୁଁ ଯାଉଛି ଧରିନେଇ-ଯାଉଚି ସେ ପିଲାମାନଙ୍କ ପାଖକୁ, ପଇସା ଆଦାୟ କରିନେବେ ।

ସୁପ୍ରିୟା—ସତେ ? ଟିପ ଦେଲି ଦେଖି ତା ଦିହରେ ! ତମେ ଜାଣିଚ ସେ କିଏ ?

ସୁବ୍ରତ—ଆପଣ ସବୁ କହିଲେ···

ସୁପ୍ରିୟା—ଚୁପ୍‌କର !

ମୁଁ କହିଲି ତମେ ତାକୁ ଧରିକରି ଭିଡ଼ି ନିଅ ବୋଲି !

ସୁବ୍ରତ—ଏଇ ଲିପି ତ ପକେଇଚି କାନ୍ଦୁଅଛି ଟା ।

ସୁପ୍ରିୟା—ଏଁ ! (ଚମକିଉଠି ଏଇ କଥାରେ । )

ଲିପି—ଶୁଣ, ମମି !

ଜଗଦୀଶ—(ଚମକି) ମମି···?

ଲିପି—ମୁଁ ଗାଡ଼ିରେ ଶୀଘ୍ର ଆସୁଥିଲି—ସେଇଠା ସହରକ ଭିଡ଼ ରାସ୍ତାଟା—ରାସ୍ତାରେ ପାଣି ହୋଇଥିଲା ।

ସୁପ୍ରିୟା—ସେଇଠୁ କଣ ହୋଇଗଲା ?

ଲିପି—ଏମାନେ ସବୁ ରାସ୍ତାରେ ଠିଆ ହୋଇଥିଲେ ।

ସୁପ୍ରିୟା—କାହିଁକି ଠିଆ ହୋଇଥିଲେ ?

ଏଇ ଝିଅ ଦେଖିବାକୁ ନିଶ୍ଚୟ ।

ସୁବ୍ରତ—ଦେଖନ୍ତୁ, ଆପଣ ଆମକୁ···

ସୁପ୍ରିୟା—ଶ୍ଚୁପ୍ କର ! ତମକୁ ବେଶୀ କଣ କହିଲି ? ତମ ବୟସଟା ଆଉ ମୁଁ ଟପିକରି ଆସିନି ବୋଲି ଭାବୁଚ ?

ଲିପି—ସେଇଠୁ ହଠାତ୍ କଟେଇକରି ଆସିଲାବେଳକୁ ଏମାନଙ୍କ ଦେହରେ ଟିକେ ଛିଟା ପଡ଼ିଗଲା ।

ସୁପ୍ରିୟା—(ନିତାନ୍ତ ସହଜଭାବରେ) ହଉ, ଗଲେ ତ ଗଲା । ଏଥିରେ କଣମାନ ହୋଇଗଲା ? ଯିଏ ବାଟରେ ଘାଟରେ ଠିଆହେଇ ଜାଣିବନି, ଚାଲି ଜାଣିବନି, ସେ ଏବେ କାଦୁଅମାଡ଼ କଣ, ଆକ୍‌ସିଡେଣ୍ଟକୁ ବି କାହିଁକି ଭୟ ରଖିବ ?

ସୁବ୍ରତ—କଣ ହେଲା ? ତା'ମାନେ, ଆପଣଙ୍କର ଭୁଲ ମାଗିବା କଥା ନୁହେଁ ? କିନ୍ତୁ ପରିଣାମ କଣ ହେବ ଜାଣିଚନ୍ତି ?

ସୁପ୍ରିୟା—କଣ ରିଟାୟାର୍ଡ଼ ଆଇ. ଏ. ଏସ୍.ଙ୍କ ପୁଅ ବୋଲି ଡରିଯିବି କି ଭାବୁଚ ?

ସୁବ୍ରତ—ଡରିବେନି ତ, ବାହାରକୁ ଆସିଲେ ଦେଖି !

(ପ୍ରବେଶ କରିଚ ନଶୀଥ ବାହାରୁ)

ନଶୀଥ—ଆଉ ବାହାରକୁ ଯିବା ଦରକାର ନାହିଁ, ସବୁ ! ମୁଁ ସେମାନଙ୍କୁ ବୁଝେଇଦେଇଛି, after all accident is an accident. ତଥେ ଅପେକ୍ଷା କରିଚନ୍ତି । ସେମାନେ ବୁଝିଗଲେଣି, ଏଥର ଫେରିଯିବେ । ମୁଁ ଟିକେ ଦେଖେଁ ଭିତରେ—(ଏତକ କହି ଭିତରକୁ ଚାଲିଯାଇଚି ନଶୀଥ)

ସୁବ୍ରତ—ଆଉ ବୁଝେଇ ଦେବାରେ କଚ୍ଛୁନାହିଁ । ବୁଝିଲ ଲିପି, ଆଜ ଯିନା ଏଠି ରହିଯାଇଚି···କାଲି କଲେଜ ଆସିବଟି ?

ଲିପି—(ବେଖାତିର) ନାଇଁ, ଯିବନ, ନମେ ଅଟକେଇବ !

ସୁପ୍ରିୟା—ସେ କଣ ତୋ କଲେଜରେ ପଢ଼େ ?

ଲିପି—ହଁ, ମ, ଆମର ଇୟରରେ ।

ସୁପ୍ରିୟା—ଓହୋ, ସେଇଥିପାଇଁ···

ଜଗଦୀଶ—ଆରେ ବାବା, ଗୁଡ଼ୁ ନାହାନ୍ତି କାହିଁକ କଥା'ଟା ଯେ ? କଲେଜରେ ସବୁବେଳେ ଦେଖାଦେଖି, ଏଣେ ରାତି ପାହିଲେ ମୁହଁ ଚହାଁ ଚୁହିଁ···

ସୁବ୍ରତ—ଏମାନଙ୍କ ସଙ୍ଗରେ ରାତି ପାହିଲେ କାଇଁକ ମୁହଁ ଚୁହାଁଚୁହିଁ ହବ ମ ? ଇଏ କଣ ଆମ ପାଇ ନା ପଡ଼ଶା ?

ଜଗଦୀଶ—ଓହୋ, ଏଘର ସେଘର କେତେ ବାଟ ?

ସୁପ୍ରିୟା—(ସୁର ବଦଳାଇଡ଼) ମୁଁ ଘର କୋଠାଉପରକୁ ଯାଇଥିଲି, ଦେଖିଲି, ଵ'ଟା ଗୁତ ଲଗିଚି କହୁଲେ ଚଲେ ।

ସୁବ୍ରତ—କନ୍ତୁ ଆପଣମାନେ କାଇଁକ ଏ ଘରେ ରହିବେ ଯେ, ମୁହଁ ଚୁହାଁଚୁହିଁ ହବ ?

ସୁପ୍ରିୟା—ଉଦ୍ଧବେ, ମାନେ ? ଉଦ୍ଧସାରିଲୁଣି ଆଜିଠାରୁ ଏକ ରକମ । ଜାଣ ଯେ ବର୍ତ୍ତମାନଠାରୁ ଏଇଟା ମୋର ଘର ।

ସୁବ୍ରତ—(ହଠାତ୍ ଜ୍ଞାନ ଫେରିପାଇ) ଏଁ, ତା ମାନେ ଲିପି ବ ଏଠି···

ଜଗପ୍ରାଣ—ଏଠି କଣ ମ ? ଆଉଟି କେତେଲେ ତମଘରଘରକୁ ଡରକାଷ୍ଟ ପାଇଁ ଯିବେ କ କଣ !

(ଏଇ କଥାଟା ପରେ ଅଭିଭୂତ ହୋଇ ପଡ଼ିଚ ସୁବ୍ରତ । ଠିକେ ଭାବ ପୂରା ବଦଳିପଡ଼ି)

ସୁବ୍ରତ—ଲିପି ! ଏଇଟା ତମର ବଡ଼ ଅନ୍ୟାୟ । ତମେ ମତେ ଏତକ କହିଦେଇପାରିଥାନ୍ତ । ଦେଖ, ଭୁଲ କଣ ହୁଏ ନାଇଁ ? ମୁଁ ସେମାନଙ୍କୁ ଠିକ୍ କରିଦେଇଥାନ୍ତ । ଏଇ ବର୍ତ୍ତମାନ କେମିତି ଗୋଟାଏ ହାଙ୍କରେ ସେମାନେ ପଳେଇବେ, ଦେଖ ।

ସୁପ୍ରିୟା—(ହସିହସି) ମୁଁ ଜାଣେ ପରା । ତା'ର ସେଇଟା ଭାରି ବାଜେ ପ୍ରକୃତି, କାହାକୁ ଗୋଟାଏ କଥା କହିବନି ।

ସୁବ୍ରତ—ନାଇଁ, ମାଉସୀ ! ତା'ର ବାଜେ ପ୍ରକୃତି ଜମା ନୁହେଁ । ଏତେବୁଡ଼ାଏ ପିଲାଙ୍କୁ ଦେଖି ସେ ଝିଅପିଲାଟା ଡର ନ ଥାନ୍ତା କେମିତି ? କଥା କଣ କି, ଲିପିକୁ ଆମ କଲେଜରେ ଠିକେ···ମାନେ, (ଅପ୍ରସ୍ତୁତ) ମାନେ, ଅନ୍ୟ ନାଁରେ !

ସୁପ୍ରିୟା—କଲେଜ କୁଇନ୍ ବୋଲି କହୁଥିବେ, ଏଇଆ ତ ?

ସୁବ୍ରତ—(ଲାଜରେ) ହଁ, ମାଉସୀ !

ଲିପି—(ଲାଜ କରିଚ)

ସୁପ୍ରିୟ—ଓହୋ, ସେଥିରେ ମୁଁ ମୋଟେ ଆଶ୍ଚର୍ଯ୍ୟ ହେବନି ।
ମୋର କଲେଜ—ମେଟ୍‌ମାନେ ମୋର ଯେ ନାଁଟାକୁ ଏବେସୁଦ୍ଧା ବି ମନେ ରଖିଚନ୍ତି । ତେଣୁ, ପାର୍ଟି, ପିକ୍‌ନିକ୍‌ରେ ଦେଖା ହୋଇଗଲେ, ମଜା ଥଟ୍ଟା କରିବାକୁ ଯାଇ ସେଇ ନାଁରେ ଡ଼ାକିଦେବାକୁ ଭୁଲନ୍ତିନି ।
ସୁବ୍ରତ—ହଁ, ହଁ, ତା' ହୋଇଥିବ, ମାଉସୀ ! ଆଉ ସେଇଥି-ପାଇଁ ଗୋଟାଏ ପଦ କଥାବାର୍ତ୍ତା କରିବାର chance ବୋଲି ଭାବି ଚାଲିଆସିଚନ୍ତି ଆଉ...ମୁଁ ତାଙ୍କୁ ବିଦା କରି ଦେଉଚି, ତମେ ଦେଖ ।
ଜଗଦୀଶ—ଆଜ୍ଞା ଶୀଘ୍ର ଫିଟିବେଟି, ମଣିଷ ଏଇ ଛୁଚ୍ଛା କଥାଟରେ ସବୁ ହିସାବ ଭୁଲିଗଲାଣି ।
(ମନେ ମନେ ସେ ହିସାବ ଆରମ୍ଭ କରି ଦେଲଚି)
ସୁବ୍ରତ—(ଜଗଦୀଶକୁ) ଆପଣ ମୋର ଗୋଟାଏ କଥା ରଖିବେ ?
ଜଗଦୀଶ—ମୁଁ ...?
ସୁବ୍ରତ—ହେଇ, ଶୁଣନ୍ତୁ ! ମୁଁ ଯାହା କହିବି ଆପଣଙ୍କୁ... ଆପଣ ଟିକେ ଏଇଠିକି ଆସନ୍ତୁ ।
(ଗୋଟାଏ କଡ଼କୁ ନେଇ କଅଣ କହିବା ଆରମ୍ଭ କରିଚି ଚୁପ୍ ଚୁପ୍ କରି । )
[ଏଇଠାକୁ ଆଲୋକର ସାହାଯ୍ୟରେ ଅନ୍ଧକାର zoneରେ ରଖିଦିଆଯାଇପାରେ । ଦୁଇଟି ଖାଲି ସେମାନେ କଥାଭାଷା ନିମ୍ନସ୍ୱରରେ ହେଉଥିବା ଭଳି ଜଣାପଡୁଥିବ କିନ୍ତୁ ଶୁଣାଯାଉନଥିବ । କିନ୍ତୁ କଥାଭାଷା

ତେବେଳେ କୌଣସି ପ୍ରକାରର ଅଭିନୟ ବା ହାତ-
ମୁହଁର ଭଙ୍ଗୀ ଯେମିତ ଦର୍ଶକଙ୍କୁ ଆକୃଷ୍ଟ ନାକରେ ।
ତା'ହେଲେ ଦୃଷ୍ଟି ଏଇ ସମୟରେ ଅନ୍ୟ zoneରେ
ଅଭିନୀତ ହେବା ଅଂଶଗୁଡ଼ିକ ବ୍ୟାହତ ହେବ । ]
(ଏପାଖରେ ସୁପ୍ରିୟାକୁ ଗମ୍ଭୀରଭାବେ ବସିଥିବାର ଦେଖି
ଲିପି ତା' ପାଖକୁ ଯାଇଚ)

ଲିପି—ମମି, ତମର କଣ ହେଲା ?

ସୁପ୍ରିୟା—(ଟିକେ ରାଗିଲାଭଳି) ନା ।

ଲିପି—ମୋ ଉପରେ ରାଗିଚ ?

ସୁପ୍ରିୟା—ହଁ ।

ଲିପି—କାଇଁକି ? ଏଇ ଗାଡ଼ି ଚଲେଇବା ଯୋଗୁଁ ?

ସୁପ୍ରିୟ—ନା ।

ଲିପି—ଏଠିକି ଆସିବା ଯୋଗୁଁ ?

ସୁପ୍ରିୟା—ହଁ ।

ଲିପି—କିନ୍ତୁ ତମେ ତ ମୋତେ ଡାକିଲ ଆସିବାକୁ ।

ସୁପ୍ରିୟା—ମୁଁ ଜାଣି ନ ଥିଲି ବୋଲି ଡାକିଲି ।

ଲିପି—କଣ ହେଲା କି ?

ସୁପ୍ରିୟା—ତତେ ସବୁବେଳେ ମୁଁ ସାଙ୍ଗରେ ଯୁଆଡ଼େ ଗଲେ ବି
ନେଇଯାଏ କାଇଁକି ଜାଣୁ ?

ଲିପି—କେତେଥର ତ କହିଚ ଯେ ଆମେ ଦୁହେଁ ମା ଝିଅ
ନୁହଁ; ଗୋଟାଏ ନିର୍ଦ୍ଦିଷ୍ଟ ବୟସର ସୀମାରେଖା ଟପି-
ସାରିଲା ପରେ ଆମେ ଦୁହେଁ ଦୁଇଟି ସାଙ୍ଗ ।

ସୁପ୍ରିୟା—ତା'ମାନେ, ତୋ ମୋ ଭିତରେ ଆପାତତଃ କିଛି
ଗୋପନ ରଖିବା ଉଚିତ ନୁହେଁ ।

ଲିପି—ନା'ତ । କିଏ ମନାକଲା ? ଏମିତିକି ଶୁଭକାନ୍ତ କଥା ବି ତ ମୁଁ ତମକୁ କହିଦେଇଚି—

ସୁପ୍ରିୟା—ଶୁଭକାନ୍ତ କଥା ନୁହେଁ, ନିଶୀଥ କଥା ।

ଲିପି—ନିଶୀଥ ?

ସୁପ୍ରିୟା—ହଁ, ଏଇ ନିଶୀଥ ।

ଲିପି—କିନ୍ତୁ ତା' ସାଙ୍ଗରେ···

ସୁପ୍ରିୟା—ଦେଖ୍ ଲିପି, ମୋର ବି ଅତୀତ ଥିଲା; ତୋ ଭଳି ଦିନେ ବୟସ ଥିଲା । ତେଣୁ ବୟସର ରହସ୍ୟ କଥାଟା ମୁଁ ବେଶୀ ଜାଣେ, ମୁଁ ସେମାନଙ୍କ ଭଳି ନୁହେଁ ଯୋଉମାନେ ନିଜ ଅତୀତ କଥାଟା ଭୁଲିଯାଇ ଅନ୍ୟକୁ ଖାଲି ଆଦର୍ଶ ଦେଖେଇ ଉପଦେଶ ଦେଇବୁଲନ୍ତି ।

ଲିପି—ମୁଁ କିଛି ବୁଝିପାରୁନି ମମି, ତମେ କଣ କହିବାକୁ ଚାହୁଁଚ ?

ସୁପ୍ରିୟା—ଏକରୁ ଏକାଧିକ ବ୍ୟକ୍ତି ଯେ ମନ ଭିତରେ ସ୍ଥାନ ଗୋଟାଏ ସମୟରେ ନ ପାଇଥାନ୍ତି ସେକଥା ନୁହେଁ । କିନ୍ତୁ ସେଥିପାଇଁ ଲଜ୍ଜା କରିବାର କଅଣ ଅଛି ? ନିଶୀଥ କଥା କହିଦେଇଥିଲେ ମୁଁ ବରଂ ଖୁସି ହୋଇଥାନ୍ତି ।

ଲିପି—ମମି, ମୁଁ ମୋଟେ ନିଶୀଥକୁ···

ସୁପ୍ରିୟା—ଦେଖ ! ଆଉ ମିଛ କହିବାଟା ତତେ ସୁନ୍ଦର ଦେଖା-ଯାଉନି । କାହିଁକି ନା, ତତେ ମୁଁ completely ଗୋଟାଏ different type ର କରି ବଢ଼େଇଚି । ଆଉ ସେଇ ବଢ଼େଇବା ଭିତରେ ମୋର କେତେ ନିଶିସ୍ୱପ୍ନ···

ଲିପି—ମମି !!

ସୁପ୍ରିୟା—ଅନ୍ତତଃ ଏତିକ ହୋଇଥାନ୍ତା ଯେ ନଶୀଥ ସାଙ୍ଗରେ ତୋର ସଂପର୍କଟା ମୁଁ ଜାଣିଥିଲେ ମତେ ଆଜ ଏଠିକ ଆସିବାକୁ ପଡ଼ି ନ ଥାନ୍ତା—

ଲିପି—ମମି, ମୋ କଥା ଶୁଣ ।

ସୁପ୍ରିୟା—କିଛି ଶୁଣିବା ଦରକାର ନାହିଁ । ତା'ଛଡ଼ା ଏଇଟା ବ ବେଳ ନୁହେଁ କି ଜାଗା ନୁହେଁ । ଅବଶ୍ୟ ମୋ decision ମୁଁ ଅଳ୍ପରେ ଏତିକ କହିପାରେ ଯେ, ଶୁଭକାନ୍ତ ଭଲ ପିଲା ହେଲେ ବ ନଶୀଥ ତା'ଠାରୁ ଯଥେଷ୍ଟ ଭଲ ! ଏବେ ଆମେରିକାରୁ ଆସିଚି, ପୁଣି ଚାଲିଯାଇ ବ ପାରେ । ତେଣୁ ସେ ବକ୍ଷସ୍ପୃଷ୍ଟା ସାଙ୍ଗରେ ଏ କଥାଟା, ଏ ହ'ଟାପାକ ମୁଁ ଫାଇନାଲ କରିବାର ଦର୍ଦ୍ଧିବୁ ତତେ ଦେଲି ।

ଲିପି—ଇସ୍, ମମି ! ତମେ କାହାଠାରୁ କଣ ଶୁଣିଲ ?

ସୁପ୍ରିୟା—ମୁଁ ଠିକ୍ ଲୋକଠୁ ଶୁଣିଚି । କାରଣ, ଘରର ଗଳଗୋଳ ସବୁବେଳେ ଚାକର, ପୁଝାରୀ, ଗୁମାସ୍ତାଙ୍କଠାରୁ ଜଣାପଡ଼େ । ସିଏ ତତେ ବେଶ୍ ଜାଣିଚି, ଏଇ ଧର ସେଇ ଲୋକଟା, ତାଙ୍କର···ଏଇ ଘରର କଣ ହୁଏ···

ଲିପି—ତା' ମାନେ, ଏଇ କହିବ···(ତା ଆଡ଼କୁ ଝୁଙ୍କିଯାଉଥିଲା)

ସୁପ୍ରିୟା—ଓହୋ, ଛାଡ଼ ! ମୁଁ ବର୍ତ୍ତମାନ ଜେରା ଜମାନବନ୍ଦୀ କରୁନ ଅବଶ୍ୟ ତୁ ମୋ କଥା ମତେ ଛାଡ଼ଦେ । ମୁଁ ଯୋଉଥିପାଇଁ ଆସିଚି, ସେ କଥା ମୁଁ ଠିକ୍ କରିବ । ତୁ ମତେ

ଆଜି ଫାଇନାଲ୍ କହିଦେ। ମୋ ମତ ମୁଁ ସ୍ପଷ୍ଟ କହି-
ଦେଉଚି ଯେ ମୁଁ ନଈଥିଲୁ ଗୃନ୍ତେଁ।

ଲିପି—କିନ୍ତୁ ସେ କଥାଟା ମୁଁ କେମିତି ଠିକ୍ କରିବି ?

ସୁପ୍ରିୟା—ସେଇଟା ତୁ ମୋ ଅପେକ୍ଷା ଭଲ ଭାବରେ ଜାଣୁ।
ଦେଖ୍, ସମୟ ଖୁବ୍ ଅଳ୍ପ।

ଲିପି—ଏତେ ଅଳ୍ପ ସମୟ ଭିତରେ···

ସୁପ୍ରିୟା—କଣ ଏତେ ବଡ଼ କଥା ଟାଏ ଯେ ? ହଁ, ନା ପଦେ
କଥା, ବାସ୍। ତୁ ଯା ଭିତରକୁ, ସେ ଯାଇଚି।

ଲିପି—ମନି !

ସୁପ୍ରିୟା—ଯା ପରା କହୁଚି।

ଲିପି—ହେଲେ······

ସୁପ୍ରିୟା—ମୁଁ କଚ୍ଛି ଶୁଣିବିନି।

(ଲିପି ଭିତରକୁ ଯାଇଚି। ଜଗଦୀଶ ଆଉ ସୁବ୍ରତର
କଥା ଶେଷ ହୋଇଚି)

[ଠିକ୍ ସୁବ୍ରତର ପ୍ରଥମକଥା ଉପରେ ହଠାତ ଆଲୋକ
ତାଙ୍କ ଉପରେ ଆସିଯାଇଚି ]

ସୁବ୍ରତ—(ପାନ୍ଟିକାଛି ଉଠିଚି) ଶୁଣିବେନି ମାନେ···ମୁଁ ଏକା
ପଦକେ ସେ ମେଣ୍ଟକୁ ଛତଭଙ୍ଗ କରିଦେବିନାହିଁ !

(ଭିତରକୁ ପ୍ରବେଶ କରିଚନ୍ତି ଜଣେ ଯୁଦ୍ଧଫେରନ୍ତା
ବ୍ୟକ୍ତି। ହାତରେ ଆଶାବାଡ଼ି। ଗୋଟିଏ ଗୋଡ଼
ଅକାମୀ ବୟସ ୩୮ ୪୦। ଉଚ୍ଚପଦସ୍ଥ ଭଳି ଜଣା-
ପଡ଼ନ୍ତି। ପରିଧାନ ଭିତରେ ସୁଟ୍। ଟାଇ ମୁହଁର ନକ୍ଶ
ଆଉ ହସ ତାଙ୍କର ବ୍ୟକ୍ତିତ୍ୱ ସମ୍ପର୍କରେ ଧାରଣା
ଦିଏ। ଗଳାଟାର ଗାମ୍ଭୀର୍ଯ୍ୟ ତାଙ୍କୁ ଜଣେ ଯୁଦ୍ଧ-

ଫେରନ୍ତା ବୋଲି ସାବ୍ୟସ୍ତ କରେ । ପ୍ରତିଟି ପଦ କଥା ଯେମିତି ତିରସ୍କାର, ଆଉ ସେଥିରେ ଭରିରହିଛି ଆଦେଶର ଗୁରୁତ୍ୱ । ପ୍ରବେଶ କରିବାମାତ୍ରେ ସୁବ୍ରତର ଏଇକଥା ତାଙ୍କ କାନରେ ବାଜିତ । ସେ କହିଉଠି-ଛନ୍ତି)

ମେଜର—କାହାକୁ ଛନ୍ଦଭଙ୍ଗ କରି ଘଉଡ଼େଇ ଦଉଚ, ମୀର ଯବାନ ?

ସୁବ୍ରତ—(ଅପରିଚିତ ଜଣକୁ ଏପରି ଅବସ୍ଥାରେ ଦେଖି) ଆଜ୍ଞା ନା, ଏଇ…

ଜଗଦୀଶ—ଆଜ୍ଞା ବାହାରେ ସେ ଗୋଟାଏ ମେଣ୍ଟ ବାନ୍ଧିଚନ୍ତି ଯେ ତାଙ୍କୁଇ କେମିତି ହଟେଇବାକୁ ପଡ଼ିବ ସେଇ ବିଷୟରେ…

ମେଜର—ଓ, ସେଇ କାଦୁଅ ଛୁଟା ପାଇଁ କୈଫିୟତ ? ହଁ… ସେମାନେ ସାମାନ୍ୟ ଉତ୍ୟକ୍ତ ହେଇ ଭିତରକୁ ପ୍ରବେଶ କରୁଥିଲେ । ମୁଁ ତାଙ୍କୁ ଦବେଇଦେଇଚି ।

ସୁପ୍ରିୟା—ଏଁ, ଆପଣ !!!

ମେଜର—ମୁଁ ରାଘବ ଶର୍ମା । ମେଜର ରାଘବ ଶର୍ମା…(ହାତଯୋଡ଼ି ନମସ୍କାର କରି)

(ସମସ୍ତେ ନମସ୍କାର କରିବା ସମୟରେ ପରିଚୟ ଦେଇଚନ୍ତି)

ଜଗଦୀଶ—ଜଗଦୀଶ ଦୁବେ, ଆଜ୍ଞା, ମେସର୍ସ ଦଲପତ୍ ସିଂ ଏଣ୍ଡ୍ କୋ ପ୍ରାଇଭେଟ ଲିମିଟେଡର ଆକାଉଣ୍ଟାଣ୍ଟ୍ କମ୍…

ସୁପ୍ରିୟା—ମିସେସ୍ ସୁପ୍ରିୟା ପଟ୍ଟନାୟକ ।

ମେଜର—(ସୁବ୍ରତକୁ) ତମେ ?

ସୁପ୍ରିୟା—ସେ ସୁବ୍ରତ, ଯେଉଁ ପିଲମାନଙ୍କ ସାଙ୍ଗରେ ଆସିଚ ।

ମେଜର—ଓ ! (ହସି) ତମେ ନା କହୁଥିଲ ଛତ୍ରଭଙ୍ଗ କରି ଘଉଡ଼େଇଦବ ବୋଲି ? ଗୋଟିଏ ପଦରେ କଥରେ ତମ ଦଳ କେମିତି ଛତ୍ରଭଙ୍ଗ ହେଇଚି, ଦେଖିବ ଯାଅ । ଆଉ ଛତ୍ରଭଙ୍ଗ କରିଦବ !!

ଜଗଦୀଶ—ସେମାନେ ତା'ହେଲେ ପଳେଇ ଗଲେଣି ?

ମେଜର—ନ ଗଲେ ବ ଯିବା ଅବସ୍ଥାରେ । ଯେଉଁ ଶତ୍ରୁ ପ୍ରବଳ ପରାକ୍ରମ ଦେଖେଇ ଆସିଥାଏ, ଯିବାବେଳର ଅବସ୍ଥା ତା'ର ଆପଣ ଦେଖିନାହାନ୍ତି ମିଷ୍ଟର ଜଗଦୀଶ ଦୁବେ ! ଘୋର କରୁଣ ସେ ଦୃଶ୍ୟ ।

ସୁବ୍ରତ—ଆପଣ କଣ ତାଙ୍କୁ ଗାଳିଦେଲେ ?

ମେଜର—What, କୈଫିୟତ ? ମୋର ଗୋଟାଏ ପ୍ରଶ୍ନ : ହେ ମୋର ଜବାନମାନେ ! ତୁମକୁ ଲଜ୍ଜା ଲାଗେ ନା ? ଆସିଚ କାଦୁଅ ଛିଟା ପଡ଼ିଗଲା ବୋଲି ବିଦ୍ରୋହର ଉଦ୍ଦେଶ୍ୟ ନେଇ ? Shame...Shame ! ତମରି ଭଳି ଲକ୍ଷ ଲକ୍ଷ ଯବାନ ଦେହରେ ରକ୍ତଛିଟା ବୋଳି-ହୋଇ ଆଗେଇ ଚାଲିଚନ୍ତି । ଆଉ ତମର ପୋଷାକ ଉପରେ ଟିକିଏ କାଦୁଅର ଛିଟା, ଯୋଉଟାକି ଧୋଇଦେଲା ମାତ୍ରେ ଗଲା, ସେଇ ଟିକିକ ପଡ଼ିଗଲା ବେଳକୁ ତମେ ଏମିତି ହଉଚ ? ଆଉ ସେଇ ପ୍ରତିବାଦ କରିବାପାଇଁ ଏକା ନୁହେଁ, ଏକାଧିକ ଆସି ନିଜର ଶକ୍ତି କ୍ଷୟ କରୁଚ ? ଛିଃ ! ବିଶ୍ୱାସଘାତକ !

ସୁବ୍ରତ—କିନ୍ତୁ ସେମାନେ ତ ବେଶୀ ରାଗିଯିବେ !

ମେଜର—What ? ମେଜର ରାଘବ ଶର୍ମା କାହାର ରାଗ ବରଦାସ୍ତ କରିବନି । ଚାଲ ଦେଖିବ, ତମରି ଭଳି ହଜାର ହଜାର ଜବାନ ମାଟିରେ ଘୁଷୁଡ଼ି, ପଙ୍କରେ ବୁଡ଼ି ତ୍ୟାଗ ପରେ ତ୍ୟାଗ କରି ଚାଲିଚନ୍ତି । ସେଇ ମାଟିରେ ଲୋଟି ମାଟି ହବାରେ କି ଆନନ୍ଦ, କି ଅପରୁଚ୍ଛିନ୍ନ ଉଚ୍ଛ୍ବାସ, କି ଅବ୍ୟକ୍ତ ଆବେଗ ! ହେଲେ ତା' ବଦଳରେ ଛୁଟାଟାଏ ପଡ଼ିଗଲି ବୋଲି ଏଇ ମେଳି ! ହାଃ, ହାଃ !

ସୁପ୍ରିୟା—ଯାଅ ସୁବ୍ରତ, ସେମାନଙ୍କୁ ଯିବାପାଇଁ କହିଦିଅ ।

ସୁବ୍ରତ— (କିଛି କହିନି)

ମେଜର—କ'ଣ, ବୀର ଜବାନ ? ଗ୍ଲାନି ଆସୁଚି ମନରେ, ପରାଜିତ ସୈନିକ ଭଳି ? ଯାଅ···କହିଦେଇ ଆସ ।

(ସୁବ୍ରତ ଅଗତ୍ୟା ଯିବାକୁ ବାହାରିଚି । ଜଗଦୀଶଙ୍କୁ ମଧ୍ୟ ଠାରିଚି ତା'ସାଙ୍ଗରେ ଯିବାପାଇଁ । ଦୁହେଁ ବାହାରିଗଲେ । ତାଙ୍କର ଗଲାପଥକୁ ଚାହିଁ)

ମେଜର—Like. an obedient soldier, ହାଃ ହାଃ ହାଃ, ଆପଣ ଜାଣନ୍ତି, ମିସେସ୍ ସୁପ୍ରିୟା ପଟ୍ଟନାୟକ, ଏମାନଙ୍କ ଭିତରେ ପ୍ରକୃତରେ ବୀରତ୍ୱ ଅଛି; କିନ୍ତୁ ତା'ର ସଦ୍‌ବ୍ୟବହାର ହୋଇପାରୁନାହିଁ । ପ୍ରଚୁର ଶକ୍ତିର ବିନିଯୋଗ ହୋଇଚାଲିଚି ଭୁଲବାଟରେ, ଅଯଥାରେ !

ସୁପ୍ରିୟା—ପ୍ରକୃତରେ କଥାଟା ନିହାତି ସତ, ମେଜର ସାହେବ !

ମେଜର—ମିସେସ୍ ସୁପ୍ରିୟା ପଟ୍ଟନାୟକ, କ୍ଷମା କରିବେ, ଯଦି ଆପଣଙ୍କ ନାଁଟାକୁ ମୁଁ ଟିକେ ଗ୍ରେଟଇଦେଇ ମିସେସ୍ ପଟ୍ଟନାୟକ ବୋଲି ଡାକେ ।

ସୁପ୍ରିୟା—ସୁପ୍ରିୟା ବୋଲି ବି ଡାକିପାରନ୍ତି ।

ମେଜର—ସୁପ୍ରିୟା···nice !

ସୁପ୍ରିୟା—କ'ଣ ?

ମେଜର—ଏଇ ଆପଣଙ୍କର ନାଁଟା ।

ସୁପ୍ରିୟା—ଆରେ ଯାଃ, ମୁଁ ଆଉ ନାଁଟା କୋଉଠି କହିବିନି ।

ମେଜର—କାହିଁକି, କଣ ହେଲା, ସୁପ୍ରିୟା ଦେବୀ ? କୋଉଠି ମୋର ଭୁଲ ରହିଗଲା ?

ସୁପ୍ରିୟା—ନା, ଆପଣଙ୍କର ଭୁଲ ନୁହେଁ, ମୋର ଭୁଲ, ମୋ ନା'ର ଭୁଲ । ଏଇ ଦେଖନ୍ତୁ ନା, ମୋ ଝିଅ ଲିପି ସବୁବେଳେ କୁହେ, ମମି, ତମ ନାଁଟା କେଡେ ବଢ଼ିଆ !

ମେଜର—( ହସିଲେ ) Jealousy··· । Jealousy··· Jealousy, thy name is woman

ସୁପ୍ରିୟା—ମୋତେ ବିଶ୍ୱାସ କରିବ ନି ମୁଁ । କାରଣ ସବୁ jealousyର ମୂଳରେ ପୁରୁଷଟିଏ ନିଶ୍ଚୟ ଅଛି । ଏଇ ଧରନ୍ତୁନା, ମୋ ନାଁ କଥା କେବେ ମୋର ଝିଅ କହି ନ ଥିଲା । ଯୋଉଦିନ ଶୁଭକାନ୍ତ ତାକୁ କହିଲା, ତମ ନାଁଠାରୁ ତମ ମମିଙ୍କ ନାଁଟା ବେଶୀ ମୋତେ ଭଲ ଲାଗେ, ସେଇଦିନଠାରୁ ଲିପିର ଏଇ କମ୍ପ୍ଲେନ୍ ।

ମେଜର—ଦେଖନ୍ତୁ ସୁପ୍ରିୟା ଦେବୀ···

ସୁପ୍ରିୟା—ଓହୋ, ମୁଁ ଜମା ଦେବୀ ନୁହେଁ, ମାନବୀ । ସୁପ୍ରିୟା ବୋଲି ଡାକନ୍ତୁ ନା ଦେଖନ୍ତୁ, ତ ! ଖାଲି ସୁପ୍ରିୟା ବୋଲି ଡାକିଲେ କେତେ ଭଲ ଶୁଣାଯାଉଚ ।

ମେଜର—(ହଠାତ୍ ଏଇ କଥାରେ ମେଜର ଗମ୍ଭୀର ହୋଇଯାଇ-ଚନ୍ତି) ଅନେକ ଦିନରୁ ଏଇ ହୃଦୟର କୋମଳତାଟା ମରିଯାଇଚ, ସୁପ୍ରିୟା ! ଭଲ ଖରାପର ସ୍ୱାଦୁ ଗ୍ରହିବା ଜଭଟା ଅକାମୀ ହୋଇଯାଇଚ । ଆଖି ଆଗରେ ସବୁ ଦେଖି, ଏଇ ହାତରେ ସବୁ ଅନୁଭବ କରି, ଛି ଛି ଛି, କୁତ୍‌କୁତ୍ ଉଲଗ୍ନ ଦେହ, ରୂପସୀ ତରୁଣୀ ମାନେ ନର୍ଯ୍ୟାତିତ ଅବସ୍ଥାରେ ପଡ଼ିଛନ୍ତି ତାଙ୍କୁ ଦେଖି ମନରେ ବିକାର ଆସିବାର ନାହିଁ । କୁତ୍‌କୁତ୍ ମଡ଼ା ପଚା ଗନ୍ଧ ଗୁଡ଼େ । ତାଙ୍କୁ ଅନୁଭବ କରି ମଧ୍ୟ ଘୃଣା କରିବାର ନାହିଁ । ଗଦାଗଦା ସୁନା ରୂପା, ଟଙ୍କା ଆଉ ଅର୍ଥର ପ୍ରାଚୁର୍ଯ୍ୟ ଆଖିରେ ଦେଖି ମଧ୍ୟ ତା ପ୍ରତି ଆକର୍ଷଣ ଆସିବାର ସୁଯୋଗ ନାହିଁ । ଖାଲି ମନ ଭିତରେ ସେଇ ଗୋଟାଏ କଥା—March on—ପଛକୁ ଫେରିବାର ନୁହେଁ । ପଛକୁ ଫେରିଲେ ଅତୀତ ଦେଖାଯିବ ।

ସୁପ୍ରିୟା—ଅତୀତ ଦେଖାଯିବ ? ବୁଝିପାରିଲିନି···

ମେଜର—ଅତୀତ ମୋର ଥିଲା ! ସୁପ୍ରିୟା ମୁଁ ମଧ୍ୟ ସୁପ୍ରିୟା ନ ହେଲେ ବି ସୁପ୍ରିୟା ବୋଲି ଜଣକର ଅଧିକାରୀ ଥିଲି । କିନ୍ତୁ ବହୁତ ଦିନରୁ ମୁଁ ତାଙ୍କୁ ହରେଇ-ବସିଚି । ଆଉ ତା'ର ସ୍ମୃତିକୁ ଭୁଲିଯିବାପାଇଁ ମୁଁ

ସବୁବେଳେ ଆଗେଇବାର ପରିକଳ୍ପନା କରିଛି । କିନ୍ତୁ କଣ ହେଲା ମୋର...

ସୁପ୍ରିୟା—କଣ ହୋଇଛି ?

ମେଜର—ଏଇ ଶେଷ ଯୁଦ୍ଧର ବିଜୟ ଟୀକା କିନ୍ତୁ ମୋର ଶେଷ ଟୀକା ହୋଇ ରହିଗଲା, ସୁପ୍ରିୟା ! ମୁଁ ଅକର୍ମଣ୍ୟ ହୋଇଯାଇଛି । ତେଣୁ ଏଥର କେବଳ ଘରେ ବସି ବସି ମୁଁ ସେଇ ସୁପ୍ରିୟାର ପୃଷ୍ଠା ଓଲଟେଇବା ଛଡ଼ା ଆଉ କଣ କରିବି ? କିନ୍ତୁ ସେ ଯେ କି କଷ୍ଟ...

ସୁପ୍ରିୟା—ମେଜର, ଆପଣଙ୍କର ପିଲାପିଲି ?

ମେଜର—ବେଶ୍ ! ସେଇଟିକମାତ୍ର ମୋର ସମ୍ବଳ ଗୋଟିଏ ପୁଅ । ନୋମାଟୋଲଜି ଉପରେ ଗବେଷଣା କରିବାକୁ ଆମେରିକା ଯିବ, ଯୁଦ୍ଧଭିତରେ । ତାକୁଇ ବିବାହ ଦେଇସାରିଲା ପରେ, ତା ଜୀବନ ପାଇଁ ଗୋଟାଏ ସୁପ୍ରିୟା ଆଣିଦେଇସାରିଲା ପରେ ମୋର କର୍ତ୍ତବ୍ୟ ଶେଷ ହେବ । ମୁଁ ମୋର ଅତୀତକୁ ବସି ରୋମନ୍ଥନ କରିବି ।

ସୁପ୍ରିୟା—ମେଜର ! ଆପଣଙ୍କ ପୁଅ ଆମେରିକା ଯିବ ?

ମେଜର—ହଁ...

ସୁପ୍ରିୟା—କେବେ ?

ମେଜର—ଖୁବ ନିକଟରେ । ହୁଏତ ବିବାହ ସରିବା ପରେ ପରେ...

ସୁପ୍ରିୟା—ଆପଣ...ମୁଁ କ'ଣ କହୁଥିଲି କି...(କହିବାକୁ ଦ୍ୱିଧା-ବୋଧ କରି)

ମେଜର—କ'ଣ ହେଲା ସୁପ୍ରିୟା ?

ସୁପ୍ରିୟା—ନା···ଏଇ ଧରନ୍ତୁ, ତା'ପରେ ଆପଣ ଖୁବ୍ ଫ୍ରି ହୋଇଯାନ୍ତେ । ଆପଣଙ୍କ ମୁଣ୍ଡରୁ ବୋଝ ଓହ୍ଲାଇ-ଯାଆନ୍ତା । ତା'ପରେ···ତା'ପରେ ଆପଣ ବସି ବସି ଖାଲି ଆପଣଙ୍କ ଅତୀତ କଥା ଭାବନ୍ତେ, ଏଇଆ କହୁଚନ୍ତି ନା ?

ମେଜର—ହଁ ; ଠିକ ସେଇଆ, ସୁପ୍ରିୟା ! ତା ଛଡ଼ା ଆଉ କ'ଣ କରିପାରିବ ? ଆଉ ଅଧିକା କରି କରି ଖବର-କାଗଜରୁ କଟିଂ କାଟି ସାଇତି ରଖିବ, ଯୋଉଥିରେ ବାନ୍ଧ'ରୁଥିବ ଦେଶର ବୀର ଜବାନମାନଙ୍କୁ ଦେଶ ଅମୁକ ବାଟରେ ସମବେଦନା ଜ୍ଞାପନ କରୁଚି ।

ସୁପ୍ରିୟା—ଆଚ୍ଛା, ମୁଁ ଯଦି ଗୋଟାଏ କଥା କହିବି···

ମେଜର—କୁହନା···

ସୁପ୍ରିୟା—ନା ଥାଉ ।

ମେଜର—ଆରେ, ଏତେ ଦ୍ୱିଧା କାହିଁକି ?

ସୁପ୍ରିୟା—ନାଇଁ, ଏମିତି ଆପଣଙ୍କ ପୁଅ ବିଷୟରେ ଜାଣିବାକୁ ଇଚ୍ଛା ହଉଥିଲି ଟିକେ । ଦେଖି ତ ହବନି···

ମେଜର—ମା ଖିଆ ଛୁଆ ସେ । ସ୍ନେହମମତା ବିବର୍ଜିତ । ମୋ'ଠାରୁ ଖାଲି ଯୁଦ୍ଧ ବିଷୟରେ ଶୁଣି ଶୁଣି ସେ କେମିତି ଟାଆଁସା ହୋଇଯାଇଚି । ତମ ସାଙ୍ଗରେ ଦେଖାହେଲେ ସେ ନିଶ୍ଚୟ ସୁଖୀ ହୁଅନ୍ତା । ତେବେ ଉପାୟ ନାହିଁ ।

ସୁପ୍ରିୟା—ଆଚ୍ଛା, ମେଜର ! ସେ ଆପଣଙ୍କ ଭଳି ?

ମେଜର—ମେଟେ ନୁହେଁ, ମୋଟେ ନୁହେଁ, ସୁପ୍ରିୟା, ସେ ମୋ ଭଳି ଏତେଟା ରୁକ୍ଷ ଜମା ନୁହେଁ ।

ସୁପ୍ରିୟା—ମୁଁ ସେକଥା କହୁନ ମେଜର, ମାନେ···ଏଇ ଧରନ୍ତୁ
ଦେଖିବାକୁ···

ମେଜର—(ହସିଉଠି) ଓହୋ ହୋ···ଦେଖିବାକୁ ? ତା'ମାର
ଚେହେରା ସେ କେତେଟା ଆଣିଚ ସୁପ୍ରିୟା, ! ତେଣୁ
ସେ ଏତେ ସୁନ୍ଦର ଦେଖିବାକୁ ଯେ ମୋ ପୁଅ ବୋଲି
କହିବାକୁ ମତେ ଲଜ୍ଜା ଲାଗେ ।

ସୁପ୍ରିୟା—ଏଁ ; ତା'ମାନେ ଆପଣଙ୍କଠଉଁ ? ଇସ୍ ! ମୋର ଜମା
ବିଶ୍ୱାସ ହଉନି ।

ମେଜର—( ପକେଟରୁ ଫ୍ଲେଟ ଖାଏଟା ବାହାର କରି ) ଏଇ
ଦେଖୁଚ ! ତା'ର ବେଶ୍ କଛିବର୍ଷ ତଳର ଏଇ ଫଟୋ,
ଯାହାକୁ ମୁଁ ଯୁଦ୍ଧଆଗରୁ ନେଇ ଘର ଛାଡ଼ିଥିଲି ।

ସୁପ୍ରିୟା—(ଦେଖିପକେଇ) ଇସ ! ସତେ ଠିକ୍ ଆପଣଙ୍କ ଭଳି
କହିଲେ ଚଳେ । ଆଚ୍ଛା, ମେଜର ! ଆପଣ ଶର୍ମା
ନା ?

ମେଜର—ହଁ, ରାଘବ ଶର୍ମା···

ସୁପ୍ରିୟା—ଶର୍ମା, ମାନେ ···(ଭାବି) ବୋଧହୁଏ···

ମେଜର—ମଣିଷ, ମଣିଷ, ସୁପ୍ରିୟା, ଶର୍ମା ମାନେ ବ୍ରାହ୍ମଣ କରଣ
ବା ଆଉ କଣ, ତା'ର ହିସାବ କେବେ ମୁଁ ଭାବିନି, ମୁଁ
ଜାଣେ, ମୁଁ ମଣିଷ ।

ସୁପ୍ରିୟା—ଇସ୍! Wonderful ! ମେଜର ଆପଣଙ୍କର ଆଉ
ମୋର ପ୍ରକୃତି ଆଉ ରୁଚିଭିତରେ କେମିତି ଗୋଟାଏ
ଅଦ୍ଭୁତ ମେଳ ରହିଯାଉଚି । ମୁଁ ଠିକ୍ ସେଇକଥା
ଭାବେଁ, ମଣିଷ ମଣିଷ ଛଡ଼ା ଆଉ କିଛି ହୋଇ-
ପାରେ ନା ।

ମେଜର—ମୋର ବାପା ବି ଠିକ୍ ସେଇଆ ଥିଲେ । ତେଣୁ ମୋର ଯେତେବେଳେ ବାହାଘରକଥା ଉଠିଥିଲା, ସେତେ-ବେଳେ ମୋ ବୋଉକୁ କୁଆଡ଼େ ଠିକ୍ ଏଇକଥାହିଁ କହିଥିଲେ । ଆଉ ବୋଉ ମତେ ଆସି ଉପଦେଶ ଦେଉଥିଲା କୋଉଠ ଗୋଟାଏ ମନଲଖି ଝିଅ ମୁଁ ନିଜ ପାଇଁ ଦେଖିବାକୁ ।

ସୁପ୍ରିୟା—ଚମତ୍କାର ! ଆଜକାଲର ବାପ ମା ମାନେ କେମିତି କିଛି ଟିକଏ ହେଲେ ଏଥିରୁ ଶିଖୁନାହାନ୍ତି, ମୁଁ ଖାଲି ସେଇଆ ଭାବୁଚି । ଗତାନୁଗତିକ ଧାରାର ଟିକଏ କିଛି ବ୍ୟତିକ୍ରମ ହେଲେ ସାଙ୍ଗେ ସାଙ୍ଗେ ଆଙ୍ଗୁଠି ଦେଖେଇଦଉଚନ୍ତି । କି ନିଷ୍ଠୁର ରକ୍ଷଣ-ଶୀଳ ମନୋଭାବ ରେ ବାବା ! ମୋ ଦେହ ଶୀତେଇ ଉଠେ, ଜାତି ଗୋଟାଏ କ'ଣ ?

ମେଜର—ମଣିଷ କେବଳ ଗୋଟାଏ ଜାତି···

ସୁପ୍ରିୟା—ଏବଂ ତା'ର ଭିତରେ ଦୁଇଟା ଉପଜାତି ସ୍ତ୍ରୀ ଆଉ ପୁରୁଷ, ବାସ୍ ।

ମେଜର—ସେଇଥିପାଇଁ ତ ମୋର ପ୍ରାର୍ଥୀ ନିର୍ବାଚନ ପାଇଁ ମୋର କ୍ଷେତ୍ର ଖୁବ ପ୍ରଶସ୍ତ ।

ସୁପ୍ରିୟା—ହେଲେ ମେଜର, ମୋର ଗୋଟିଏ ପ୍ରସ୍ତାବ···

ମେଜର—ନିଶ୍ଚୟ, କୁହ ।

ସୁପ୍ରିୟା—ଆଚ୍ଛା, ଆପଣଙ୍କ ପୁଅ ଆମେରିକାରୁ ଫେରିଲେ ଯଦି ବାହାଘର ହୁଏ······

ମେଜର—କାହିଁକି ? କାହିଁକି ଏ ପ୍ରଶ୍ନ, ସୁପ୍ରିୟା ?

ସୁପ୍ରିୟା—କିଛି ନୁହେଁ । ଏଇ ଧରନ୍ତୁ, ଆମେରିକା ଯିବା ଆଗରୁ ଆମେ ତାକୁ ବାହାକରିବା ମାନେ, ଗୋଟାଏ ଛନ୍ଦଦବା ତ ଉଦ୍ଦେଶ୍ୟ ? କାଲେ ସେ ଯିଆନ୍ତୁ...

ମେଜର—Never...Never, Dear Supriya.........
ମୋର ଲକ୍ଷ୍ୟ ତା ନୁହେଁ । ସେଥିପାଇଁ ମୁଁ ମୋର ଗବେଷଣା ଶେଷ କରିସାରିଛି । ମୁଁ ତାର ମନଭିତରର କଥା ଜାଣିବାକୁ ଠିକ୍ ଏଇଆକୁ ପ୍ରସ୍ତାବ ଦେଇଥିଲି । କିନ୍ତୁ ସେ ମତେ ରେକ୍‌ଟୋକ ପ୍ରତିବାଦ କରିଛି । ସେ ଘୃଣେ ଗୋଟାଏ ଝିଅ ଯେ କି ପ୍ରତିଦିନ ତା ବୋଉର ଆଦର୍ଶକୁ ଅନୁକରଣ କରି ଚଳିବ ଆଉ ତାକୁ ଚଳେଇବ ।

ସୁପ୍ରିୟା—ଆଃ ..ବାସ୍ତବିକ ଏଇମାନଙ୍କୁ ନେଇ ଗର୍ବରେ ଗୁଡି ଫୁଲଉଠେ । କାହିଁକି କେଜାଣି ମେଜର, ମୋର ଯେମିତି ଗୋଟାଏ...ମାନେ...ମୁଁ ଗୋଟାଏ କିଛି କହିବାକୁ ବସୁଚି...

ମେଜର—କୁହ କୁହ ସୁପ୍ରିୟା ! ନବେନ୍ଦୁର ଭବିଷ୍ୟତ ପାଇଁ ତମର ମଧ୍ୟ ଯଥେଷ୍ଟ କର୍ତ୍ତବ୍ୟ ରହିବା ସ୍ୱାଭାବିକ ।

ସୁପ୍ରିୟା—ନବେନ୍ଦୁ ? ତା'ହେଲେ ଆପଣଙ୍କ ପୁଅ ନାଁ ନବେନ୍ଦୁ ? ଆଚ୍ଛା, ମେଜର, ଗୋଟାଏ ମିନିଟ ରହନ୍ତୁ... ମୁଁ ଦି'ଟା ନାଁ ଲେଖି ଟିକେ କାଟେ............
(ଅତିଶୀଘ୍ର ନିଜ ବ୍ୟାଗଭିତରୁ ଟିକିଏ କାଗଜ ଆଉ କଲମ କାଢ଼ି କ'ଣ ଲେଖିବା ଆରମ୍ଭ କରିଚି । ତା'ପରେ ଅତି ଖୁସିରେ)

ସୁପ୍ରିୟା—ଚମତ୍କାର, ମେଜର ! ଆପଣଙ୍କୁ ନିଶ୍ଚୟ ମୋ କଥା
ମାନିବାକୁ ପଡ଼ିବ···ମାନେ, ଶିଖିବାକୁ ପଡ଼ିବ । ଏଇ
ଦେଖନ୍ତୁ ! (କାଗଜ ଦେଖାଇ) Love···

ମେଜର—(ଆଶ୍ଚର୍ଯ୍ୟ ଆଖିରେ) Love ? ବୁଝିପାରିଲିନି ।

ସୁପ୍ରିୟା—ଓହୋ, ଆପଣ ନାଁ ପକେଇ କାଟିବା fun ଜାଣି-
ନାହାନ୍ତି ? ଛି ଛି, ଜୀବନରେ ଗୋଳାବାରୁଦ ଛଡ଼ା
ଆଉ କିଛି ଜାଣିଲେନି ଆପଣ । ସ୍ପିରିଟ ଗୋଟାଏ
କୋଚିଂ ଦରକାର ଆପଣଙ୍କୁ ।

ମେଜର—ସତରେ, ତମେ ଠିକ କହୁଚ । କୋର୍ଟା ବହୁତ
ଶୀଘ୍ର ତାର apprenticeକୁ ଗୁଡ଼ି ଆରପୁରକୁ
ଚାଲିଗଲା, ସୁପ୍ରିୟା । ସେଥିପାଇଁ ବହୁତ ଜିନିଷ ଶିଖି-
ପାରିଲିନି । ନ ହେଲେ ନବେନ୍ଦୁର ବାହାଘର···
କେଡ଼େ ଶ୍ରେଷ୍ଠ ଜିନିଷଟାଏ, ଅଥଚ ମୁଁ ଏଠି
ହାଇଗଣ ହେଉଚି···

ସୁପ୍ରିୟା—ନା, ନା । ଆରେ; ଆପଣ କାହିଁକି ଆଉ ହାଇଗଣ
ହେବେ ? ସେଇଟା ବର୍ତ୍ତମାନଠାରୁ ମୋର ଦାୟିତ୍ୱ ।

ମେଜର—ସୁପ୍ରିୟା !

ସୁପ୍ରିୟା—ଦେଖନ୍ତୁ ଯେ···ମୁଁ ଖାଲି ଚିକିଏ ଭାବୁନଥିଁ···

ମେଜର—କ'ଣ ? କ'ଣ ଭାବୁଛ ତମେ ?

ସୁପ୍ରିୟା—ମୁଁ···ନା···ଭାବୁଛି କ'ଣ ? ସତେ ତ ଭାବୁଛି କ'ଣ ?
ନବେନ୍ଦୁ···ଓ୍ୱଣ୍ଡରଫୁଲ୍ ! ନେମାଟୋଲେଜି···
ବ୍ୟୁଟିଫୁଲ୍ । ଆଉ ଆମେରିକା···(ଖୁବ୍ ଜୋରରେ
ଆନନ୍ଦରେ ହସି ଉଠିଛି । ) ଆପଣ ଏକ୍‌ଦମ୍ ଫ୍ରି,

ମେଜରଆଜ୍ଞ ! ଆପଣଙ୍କର ଚିକିଏ ବି ସ୍ତବ୍ଧତାର ନାହିଁ ।

ମେଜର—କିଏ କହିଲା ? ସେପୁରରେ ମୋର ସେଇ ସୁପ୍ରିୟାର ଆତ୍ମା ମତେ ଏପାକେ ବି ଇଙ୍ଗିତ କରୁଚି । ମୁଁ ତୃପ୍ତ, ସୁପ୍ରିୟା ! ସେ ଯେମିତି କହୁଚି, ତମେ ଗୋଟିଏ ବି କର୍ତ୍ତବ୍ୟ ତମର କରିନା ଏପାକେ । ତାର ଆତ୍ମା ଶାନ୍ତି ପାଉନି ତାକୁ ମୁଁ କୁଆଡେ ଭୁଲିଯାଇଚି··· । ମିଛ···ମିଛ···

(କାନ୍ଦ ଆସିଯାଇଚି ମେଜରଙ୍କ ଗଳାରେ । ଠିକ୍ ଏତିକବେଳେ ଭିତରକୁ ପ୍ରବେଶ କରିଚନ୍ତି ଲିପି ଆଉ ନିଶୀଥ)

ସୁପ୍ରିୟା—ମେଜର, ଇଏ ନିଶୀଥ ।

ନିଶୀଥ—(ନମସ୍କାର କରିଚି)

ସୁପ୍ରିୟା—ମେଜର ସ୍ୱପନ ଶର୍ମା ।

ମେଜର—yes, ସାର ଜବାନ, କଣ ଆଉ ଖବର ?

ସୁପ୍ରିୟା—ଆଉ ଇଏ ମୋ ଝିଅ ଲିପି । (ଲିପି ନମସ୍କାର କରିଚି)

ମେଜର—ଲିପି । ଜୀବନର ପ୍ରତିଟି ପୃଷ୍ଠାରେ ଅନେକ ସ୍ମୃତିର ଲିପି ଲେଖା । ତା'ର ଭିତରୁ ବିଶେଷ ଆକର୍ଷଣୀୟ ବିଶେଷ ସ୍ମରଣୀୟ ସ୍ମୃତିକୁ ନାଲିଗାର ଦେଇ ଲେଖି-ରଖିଚି ଲିପି ।

ସୁପ୍ରିୟା—ଓହୋ, ମେଜର ! ତାକୁ କ'ଣ ଥଟ୍ଟା କରୁଚନ୍ତି ମ ? ଚାଲନ୍ତୁ, ଆମେର ସେ ପାଖରେ ଗପିବା । ସେ ପିଲାମାନେ ଏଇଠି ଥାଆନ୍ତୁ । ଆସନ୍ତୁ, ଘରଟା ବି

ଦେଖିଆସିବେ । ମିଷ୍ଟର ପଟ୍ଟନାୟକ ତ ଆହୁରି ୩୦ ମିନଟ୍ ପୂଜା କରିବେ ବୋଧହୁଏ ।

ମେଜର—ହଁ...ଚାଲନ୍ତୁ । (ବୁଢ଼ୀଙ୍କ ଭିତର ଆଡ଼କୁ ଚାଲିଗଲେ)

ଲିପି—(ନଶୀଥକୁ) ସ୍ୱାର୍ଥପର ଖୁବ୍ ଆପଣ । ମୁଁ ଗୋଟାଏ ଝିଅ ହେଇ ଏତକଟା କହିପାରିଲି । ଅଥଚ ଆପଣ ପାରିବେନି ? କାହିଁକି ? କାହିଁକି ପାରିବେନି ?

ନଶୀଥ—ଦେଖନ୍ତୁ, ମିସ୍ ପଟ୍ଟନାୟକ !

ଲିପି—ଓ, ବୋର୍, ବୋର୍, ବୋର୍! ସେଇ ମିସ୍ ପଟ୍ଟନାୟକ, ଲିପି ଦେଖ...ଯ୍ୟା'ଛଡ଼ା କେବଳ ଲିପି ବୋଲି ଡାକିଲେ ଯେମିତି ଚଳେନା । ଲିପି ବୋଲି ଡାକିଲେ ମୁଁ କେବେହେଲେ ଭାବିବିନି ଯେ, ଆପଣ...

ନଶୀଥ—ଲିପି ! ମୋ କଥା ଟିକେ ଶୁଣ !

ଲିପି—ବାସ୍, ଆଉ କଣ ଶୁଣିବାର ଅଛି ? (ଭାଙ୍ଗିପଡ଼ି) ହଠାତ୍ କେମିତି ଚାଲିଚାଲି କ୍ଲାନ୍ତିର ନଦ ଟିକେ ଆସିଯାଇଥିଲି । ଆଉ ତା'ରି ଭିତରେ ହଠାତ୍ ଗୋଟାଏ ସ୍ୱପ୍ନ ଦେଖିପକାଇଥିଲି । ଧରିନିଆଯାଇପାରେ ଯେ, ସେ ସ୍ୱପ୍ନ ଭାଙ୍ଗିଯାଇଛି । ଆଉ ଏଥିରେ ବୁଝେଇବାର କଣ ଅଛି ?

ନଶୀଥ—ଓହୋ ଲିପି, ମୁଁ ପରା କହିଲି ଯେ, ମୁଁ ବିବାହ କରିବିନି ନା, ଏପର୍ଯ୍ୟନ୍ତ ନିଜକୁ ପ୍ରସ୍ତୁତ କରିପାରିନି ।

ଲିପି—କିନ୍ତୁ ତା'ର ଠିକ୍ ଗୋଟିଏ ମିନଟ୍ ପୂର୍ବରୁ କହିଥିଲେ ଯେ, ଡଲି ହ୍ୱାଇଟଫିଲ୍ଡ୍‌ର ସ୍ମୃତି ଆପଣ ମନରୁ ପୋଛିଦେଇପାରିନାହାନ୍ତି...

ନଶୀଥ—(ହଠାତ୍ ଗଡ଼ିଉଠି) ଭୁଲ, ଭୁଲ, ଭୁଲ ! ଭୁଲରେ ଗୋଟାଏ ନାଁ ପାଟିରୁ ବାହାରିପଡ଼ିଲା; ଆଉ ତାକୁଇ ନେଇ ତୁମେ ମୋର ବ୍ୟବଚ୍ଛେଦ କରିବା ଆରମ୍ଭ କରିଚ !

ଲିପି—ଓ, ପାଟିରୁ ବାହାରିପଡ଼ିଲା ! ତା ମାନେ, ଆପଣ ଲୁଚେଇବାକୁ ଚାହୁଁଥିଲେ, କିନ୍ତୁ ବାହାରିପଡ଼ିଲା, ଏଇଆ ତ ?

ନଶୀଥ— ଲିପି, ମତେ ଆଉ ଥରେ ଭାବିବାକୁ ଦିଅ । ହୁଏତ, ମୁଁ ଏଥିରେ ବେଶୀ ସୁଖୀହେବ ।

ଲିପି—(କାନ୍ଦପକେଇ) ନା-ନା-ନା, ଆପଣଙ୍କର ଖୁସି ହବାର ଏଥିରେ କିଛି ନାହିଁ । ବରଂ ମୁଁ ମୋର କଥା ଫେରେଇନଉଚି, ଅନେକ ଭୁଲର ସମ୍ଭାବନା ଭିତରୁ ଇଏ ଗୋଟାଏ ଭୁଲ । ମୁଁ ଭଲ ହୋଇ ଟ୍ରୁଫିଲିଉ ନୁହେଁ, କମ୍ଭୀ ହବା ମଧ୍ୟ ସମ୍ଭବ ନୁହେଁ ।

ନଶୀଥ—ଲିପି, ମତେ ମୁକ୍ତି ଦିଅ ।

ଲିପି—ଧରିରଖିବାର ଅଧିକାର ମୋର ନାହିଁ, ତେଣୁ ମୁକ୍ତି ଦେବାର ପ୍ରଶ୍ନ ଉଠୁନି । ଆପଣ ବରଂ ମୋତେ କ୍ଷମା ଦିଅନ୍ତୁ । ହଠାତ୍ ଏଭଳି ଭାବରେ ଏକ ପ୍ରସ୍ତାବ ମୋ ତରଫରୁ ଉପସ୍ଥାପିତ କରି ମୁଁ ଉଚ୍ଛୃଙ୍ଖଳତା ଦେଖେଇଚି । କିନ୍ତୁ, ମତେ କୁହନ୍ତୁ ତ ଯୋଉଠି ଫେରି ଆପଣ ସେ ଜାଗାର ଆଦର୍ଶ ବିଷୟରେ ଅନେକ କିଛି ଅବତାରଣା କରୁଛନ୍ତି, ସେଠାକାର ଧ୍ୱିମ୍ ସୁଟ, ବିକିନି ଆଉ ନେଗଲିଜି ପିନ୍ଧି ସନ୍ ବାଥ୍ କରୁଥିବା ଝିଅଙ୍କଠାରୁ ମୁଁ କଣ ବେଶୀ ଉଚ୍ଛୃଙ୍ଖଳ ? ରାଶିରାଶି ମେରି-

ଦୁଆନାର ସ୍ୱପ୍ନ, ପରିକଳ୍ପନାକୁ ମୁଣ୍ଡରେ ରଖି ଏଠିକାର ଯୋଉ ପ୍ରଗତିଶୀଳା ତରୁଣୀମାନେ ଆଧୁନିକତାର ଉପଗ୍ରହ ବାତ୍ୟାନ୍ତ ତା'ଠଉଁ କଣ ମୋର ଏଭଳି ଏକ ମୁହଁ ଖୋଲା ପ୍ରସ୍ତାବ ଅଧିକ ନିର୍ଲଜ୍ଜ, ଆଉ ଅବାନ୍ତର ? (ନଶୀଥ ଆଉ କିଛି କହିବାକୁ ଚାହୁଁ ଥିଲା, କହି ନପାରି ବାହାର ଆଡ଼କୁ ପଳେଇଲା । ଠିକ୍ ଲିପି ଭିତରକୁ ଗଲାବେଳକୁ ମେଜର ହସିହସି ପ୍ରବେଶ କରିଚନ୍ତି)

ମେଜର—No I differ ମୁଁ ତମ ମମିଙ୍କ ସହିତ ଏକମତ ନୁହେଁ । ଆଚ୍ଛା, ଲିପି ! ତମର ମତାମତ କ'ଣ, କହିଲ ?

ଲିପି—କୋଉ କଥା, ଆଜ୍ଞା ?

ମେଜର—ଗୋଟାଏ ପୁଅ ପାଇଁ ଗୋଟାଏ ଝିଅର ସବୁଠାରୁ ଆକର୍ଷଣୀୟ ଜିନିଷ କ'ଣ ?

ଲିପି—ତୁଏତ ରୂପ ।

ମେଜର—ଭୁଲ୍ । ମୁଁ ତମ ମମିକୁ ସେଇକଥା କହିଲି । ମୋ ପାଇଁ ଏମିତି ଜଣେ ଦରକାର ଯେ କି ହସିଲାବେଳେ ଖୁବ୍ ଜୋରରେ ବହୁତ ହସିବ, ଆଉ କାନ୍ଦିଲାବେଳେ ଖୁବ୍ ଜୋରରେ ବହୁତ କାନ୍ଦିବ ।

ଲିପି—ତା'ମାନେ ?

ମେଜର—ତା'ମାନେ, ମୋର ଝିଅ ବହୁତ ହସେ ଆଉ ବହୁତ କାନ୍ଦେ । ସେ ଝିଅ ଶସ୍ତାରେ ହସିପକାଏନି, କି ସହଜରେ କାନ୍ଦପକାଏନି । ତାକୁ ହସେଇବାକୁ ଆଉ କନ୍ଦେଇବାକୁ ପରିଶ୍ରମ କରିବାକୁ ପଡ଼େ । କିନ୍ତୁ ତମ ମମି କୁହନ୍ତି, କହିଲି କହିଲି ଆଖି, ହସିଲି ହସିଲି

ଓଠ···ଇତ୍ୟାଦି, ଇତ୍ୟାଦି, ଇତ୍ୟାଦି । ସବୁ ବାଜେ । କାଇଁକନା, ଗୋଟାଏ ତୁଳି ଧରିଲେ ଯେକୌଣସି ଅସୁନ୍ଦର ଆଖିକୁ ମଧ୍ୟ କଳ୍ପନା କରିଲା ସଜା ଯାଇପାରେ । ଏଇ ଧର, ତମ ଆଖି··· (ହଠାତ୍ ତା ଆଖିରେ ଲୁହ ଦେଖି) ଲିପି, ତୁମ ଆଖିର ଲୁହ·?

ଲିପି—(ପୋଛିଦେଇ) କାଇଁ, ନା ତ···

ମେଜର—ହ୍ୱାଟ ? ବ୍ଲଫ୍ ? ମେଜର ରାଘବ ଶର୍ମା ଜୀବନରେ ଯାହା ସବୁଠୁଁ କେଉଁଟାକୁ ବେଶୀ ଚିହ୍ନେ, ତା'ହେଲେ ଏଇ ଲୁହକୁ । କାଇଁକି କାନ୍ଦୁଚ···betrayed ? (ହସିଲେ)

ଲିପି—(କିଛି କହିପାରିନି)

ମେଜର—ଏଁ···ତା'ହେଲେ ତମ ମସି ମତେ ଭୁଲ କରୁଚନ୍ତି ।

ଲିପି—ଭୁଲ···ଭୁଲ । ସବୁ ଭୁଲ ତା'ର···

ମେଜର—ତେବେ ତମେ ତାକୁ ସଂଶୋଧନ କରିଦିଅ । ଶୁଣ, ତମକୁ ଗୋଟାଏ ପ୍ରଶ୍ନ ପଚାରିବାପାଇଁ ମୁଁ ତାକୁ ଭିତରେ ଅନ୍ୟ କାମରେ ଲଗେଇଦେଇ ଖସି-ଆସିଚି । ତମେ ସ୍ୱବାଦ କରିବ ? ମୋର ଜୀବନରେ ମତେ ସମ୍ଭାଳିବା ପାଇଁ ଯୋଉ ଜଣକ ଆସିଥିଲା ସେ ତା'ର କର୍ତ୍ତବ୍ୟ ପୂରା କରିବା ଆଗରୁ ଫାଙ୍କିଦେଇ ଚାଲିଗଲା । ତେଣୁ ମତେ ସେ କଷ୍ଟରୁ ଉଦ୍ଧାର କର ।

ଲିପି—(ସମ୍ପୂର୍ଣ୍ଣ ଭାବରେ ହତଭମ୍ବ ହୋଇଯାଇଚି) ମୁଁ !!

ମେଜର—ଶୁଣ ! ତମେ ମତେ ତ ଦେଖୁଚ । ସେଥିରୁ ବୁଝିପାରିବ । ଆଚ୍ଛା, କୁହ ତ, ମୁଁ ଦେଖିବାକୁ କ'ଣ···

ମାନେ, ନିତାନ୍ତ ଅନ୍ତୁଶକର ? ଏଇ ଧର, ବୟସ ବି ସେଥିରୁ ଅନୁମାନ କରିହବ ।

ଲିପି—ଦେଖନ୍ତୁ, ମତେ କହିବା ଅପେକ୍ଷା ମମିକୁ···

ମେଜର—ନା, ମୁଁ ସବୁବେଳେ ସିଧା କଥାବାର୍ତ୍ତା ପସନ୍ଦ କରେ । ସେଥିପାଇଁ ତମ ମତାମତ ପଚାରୁଛି ।

ଲିପି—ମୁଁ ହୁଏତ ବିବାହ ନ କରିପାରେ ।

ମେଜର—ଏଁ ? (ହସି) କ'ଣ ଅଭିମାନ ? ଜୀବନ ପ୍ରତି ବିତୃଷ୍ଣା ? କାହା ଉପରେ ପ୍ରତିଶୋଧ ନବାର ପରି-କଳ୍ପନା ?

ଲିପି—ଠିକ୍ କହିପାରିବିନି କ'ଣ ମୁଁ ଚାହେଁ । ତେବେ ଭାବୁଚି···

ମେଜର—ଉିଉଟି ପାଖରେ ଭାବିବାର କିଛି ନାହିଁ, ୟଙ୍ଗ୍ ଗାର୍ଲ ! ଏଇଟା ତମ ଜୀବନର କର୍ତ୍ତବ୍ୟ, ନାରୀ ଜୀବନର ଆଦର୍ଶ !

ଲିପି—ସେ ଆଦର୍ଶ କଣ ମୁଁ ବୁଝେନି ।

ମେଜର—ବିବାହ କରିସାରିବା ପରେ ବୁଝିବା ଆରମ୍ଭ କରିବ । ମତେ ଲୁହ, ତମ ଭଳି ଜଣକୁ ମୋର ନିତାନ୍ତ ଦରକାର ।

ଲିପି—କିନ୍ତୁ···କିନ୍ତୁ ମତେ ଭାବିବାକୁ ଟିକେ ଦିଅନ୍ତୁ ।

ମେଜର—ନା । ଯୁଦ୍ଧର ମାର୍ଚ୍ଚ ଭିତରେ ଭାବିବାର ଅବକାଶ ଗୋଟାଏ ସୈନିକର ନାହିଁ । ତାକୁ କେବଳ ଆଦେଶ-ଟାହିଁ ମାନିବାକୁ ପଡ଼େ । ଲୁହ ଲିପି, ମୁଁ କ୍ରମଶଃ ବେଶୀ ଦୁର୍ବଳ ହୋଇପଡ଼ୁଚି । ତମେ ଯେତେବେଳେ ଆମେରିକା ଚାଲିଯିବ···

ଲିପି—(ଶିତ୍କାର କରିଉଠିବ) ନାଃ···ଆମେରିକା ବା ଆଉ
କୋଉଠିକି ମୁଁ ଯାଇନ ପାରିବନି । ନା ନା, କେବେ
ହବନି । କାରଣ ଆପଣ ଜାଣନ୍ତି ନାହିଁ ମେଜର,
ସେଇ ସବୁ ଦେଶମାନଙ୍କରେ ଉଲ ଦ୍ୱାଇଟ୍ଫିଲ୍ଡର
ଦଳ ପ୍ରଚୁର । ତାଙ୍କର ଅସଂଖ୍ୟ ଜାଲ ଭିତରେ
ମୁଁ ଛନ୍ଦି ହୋଇ ମରିଯିବି । ସେମାନେ ମୋ ଉପରେ
ବାଦ ସାଧିବାକୁ ମତେ ଫିନ୍ଭିନ୍କରିପକେଇବେ ।
ଆପଣ ମତେ କ୍ଷମା ଦିଅନ୍ତୁ ।

ମେଜର—ଓ···ତା’ହେଲେ ମନରେ କୌଣସି ଏକ କ୍ୟାମ୍ପରେ
ତମର ବହୁତ ଜୋରରେ ବମ୍ପିଂ ହୋଇ ନାଇଁ
ଜାଣୁଚ, ନୁହେଁ ? ତେଣୁ ମୋ ପ୍ରସ୍ତାବଟା ଭଲ ଲାଗୁନି
ତମକୁ ।

ଲିପି—ନା ମେଜର, ସେକଥା ନୁହେଁ । ଆପଣ କୁହନ୍ତୁ,
ଫରେନ୍କୁ ନ ଗଲେ କଣ ଆପଣଙ୍କର ଚଳନ୍ତା ନି ?
ଯଦି ବି ମୋ ଜୀବନଟାକୁ ମୁଁ ତ୍ୟାଗର ଆହୁତି ଦେବା
ପାଇଁ ଆପଣଙ୍କୁ ଉତ୍ସର୍ଗ କରେ ତାହେଲେ ବୁଝିପାରୁ-
ଛନ୍ତି ତ, ଆପଣଙ୍କୁ ନେଇ ସେଠି ଚଳାଇବେଲକୁ କି
ବ୍ୟଙ୍ଗ, ବିଦ୍ରୂପ ମତେ ସହିବାକୁ ପଡ଼ିବ ?

ମେଜର—ଆରେ, ମୁଁ ଫରେନ୍ ଯାଉନି···

ଲିପି—ଆଜି ଆପଣ କହିଲେ ନା ?

ମେଜର—ମୋ ପୁଅ ନରେନ୍ଦ୍ର···

ଲିପି—ତା’ମାନେ···ବାହାଘର ?

ମେଜର—ଆରେ, ମୋ ପୁଅ ଯାଉଚି । ତା’ମାନେ, ତମେ
ଭାବିଥିଲ···ଇଶ୍···ଇଜ ଫୁଲ୍ !

(ଲାଜ ହୋଇଯାଇଛି ଏକରକମ ଲିପିକୁ । ଆଉ ବୃନ୍ଧି-ପାରୁନି ମେଜରଙ୍କୁ । ଭିତରକୁ ଖସି ପଳେଇଯାଇଛି । ମେଜର ସେମିତି କହୁଥିବେଳେ ଏବାନ୍ତର ଆସିଛି)

ମେଜର—ମୁଁ ଏବ ଢ଼ କରିବି ? (ମନକୁ ମନ) ଗୋଟାଏ ଯୁଦ୍ଧରେ ମୋର ସାମର୍ଥ୍ୟ ମତେ ଠକଦେଇ ଚାଲିଗଲା ପରେ କୋଉ ମୂହ ଁରେ ଆଉ ଗୋଟିଏ ବଡ଼ଲୁ ଯୁଦ୍ଧର ଆଶା କରିବି, ବୁଢ଼ ତ । ଜୀବନଯୁଦ୍ଧରେ ବି ମୁଁ ସେମିତି ଏକ ପଦଚ୍ୟୁତ ସୈନିକ । ମୋର କ୍ଳାନ୍ତ ଆସିଯାଇଛି । ସେ ଯୁଦ୍ଧକଥା ମନେପଡ଼ିଲେ କେମିତି କେଜାଣି ମନ ଭିତରେ ମୋର ଗୋଟାଏ ଗ୍ରେନେଡ଼ କୁହୁଡ଼ି ମାଡ଼ି ଯାଉଛି··· । (ହଠାତ୍ ଗତି ବଦଳେଇ) ଅଚ୍ଛା, ମୋ କଥାଗୁଡ଼ିକ ସବୁ ଭୁଲି ହୋଇଯାଉଛି କି ?
(ଦେଖି ପକେଇଛି ଲିପି ନାହିଁ)
ଆରେ ତା ମମିକୁ କାଳେ କହିଦବ···(ଭିତରକୁ ଚାଲିଯାଇଚନ୍ତି । ମଞ୍ଚ ଖାଲି । ଭିତରୁ ଆସିଛି ବଳଭଦ୍ର । ଟ୍ରେରେ ଅନେକ୍ କପ୍ ଚା)

ବଳଭଦ୍ର—ଏଥର ଆଜ୍ଞା, ଆଉ ବ୍ୟସ୍ତ ହବାର ନାହିଁ । ଗୋଟାଏ ଟାଙ୍କି ଚା' ବସେଇଦେଇଛି । ଖାଲି ଆସିଲା ମାନେ ଆସିଲା (ଦେଖିଛି କେହି ନାହାନ୍ତି) ଏଁ, କଣ କେହି ନାହାନ୍ତି । ଓଃ ହୋ, ଖାଇଗଲେ ମଣିଷକୁ ହୋ —ଚା ଚା ଚା···ଏଥର ଆଉ ଭାବିବାରନାହିଁ । ଗୋଟାଏ ଡେକ୍ଚିରେ ଗରମ ପାଣି ବସେଇଦେଇଥିଲି ।
( ବାହାର ପଟରୁ ପ୍ରବେଶ କଲେ ଜଗଦୀଶ ଆଉ ସୁବ୍ରତ )

ସୁବ୍ରତ—କ'ଣ ହେଲା, ବଳ !
ବଳଭଦ୍ର—ଆଜ୍ଞା, ଡବଲ ଗ୍ଲ' ଦରକାର ?
ସୁବ୍ରତ—କାହିଁ, ବହୁତ କରତ୍ କ ?
ଜଗନ୍ନାଥ—ହଁ, ସେମିତି ଗୋଟାଏ ଆୟୋଜନ ନିଶ୍ଚୟ ।
ସୁବ୍ରତ—ବେ । (ଉଠେଇ ନେଇଚନ୍ତି ଦୁହେଁ) କନୁ କାହା ପାଇଁ କରିଥିଲୁ ?
ବଳଭଦ୍ର—କାହା ପାଇଁ ? ଆଜ୍ଞା କାହା ପାଇଁ କରି ଫେଲ ମାଇଲା ପରା । କାହା ପାଇଁ କଲାବେଳକୁ ଆଉ ଜଣେ ପାଇଁ ଆସି ପହଞ୍ଚିଗଲେ । ବେଶ୍, ପୁଣି ତାଙ୍କ ପାଇଁ କର । ଏଥର ଦେଇଚ ବସେଇ ସବୁଠଉଁ ବଡ ଡେକ୍‌ଚିରେ ଡେକ୍‌ଚାଏ ପାଣି । ବ'ଟା ଅମୂଲ ଡବା ସେଠି ଖୋଲିଚ । ବାସ୍, କଏ ମ ଗିବା ଆଗରୁ ଗ୍ଲ' ଫେର ଗ୍ଲ', ଆହୁରି ଗ୍ଲ' ଖାଅ, କେତେ ଖାଉଚ ଖାଅ । ବାବୁ ପୂଜରୁ ଉଠିଲାବେଳକୁ ଗ୍ଲ' ଖୋଇ ଖୋଇ ଏମିତି ପେଟକୁ ଶୁଝେଇଦେଇଥିବ ଯେ, ବାବୁ ଦାଶ ଥର ଖାଇବାକୁ କହୁ ପ୍ରସ୍ତାବ କ'ଲେ ବ ଆଉ କେହି ହଁ କରିବେ ନାହିଁ ।
ଜଗନ୍ନାଥ—ବାଃ, ସୁନ୍ଦର ଆଇଡିଆ ! ହଇହେ ବଳ, ବାବୁ ଏଠୁ ଗଲେ ତମେ ପୁଣି ଆଉ କୁଆଡ଼େ ଯିବ ନା ତାଙ୍କରି ସାଙ୍ଗରେ ଯିବ ?
ବଳଭଦ୍ର—ନାଇଁ ନାଇଁ ଜମା ନାହିଁ, ବାବୁ କୁଆଡ଼େ ଗଲେ ମୋର କହୁ ନାହିଁ । ମୁଁ ତ ମା'ଙ୍କ ଲୋକ, ଆଉ, ମୁଁ ଚାଲିଲି ମା'ଙ୍କ ପାଖକୁ ।

ଜଗନ୍ନାଥ—ବାଃ, ଠିକ୍ କଥା, ଠିକ୍ ବୁଦ୍ଧି କରିଚ । ଆଚ୍ଛା କହ, ତମେ ଗୋଟାଏ କଥା କହିଲ, ତମ ବାଡ଼ିପଟେ ସତ୍ୟବନଟା କୁକୁଡ଼ା ରଖିପାରିବା ଭଳି ଗୋଟାଏ ତାରଜାଲି ଘେରା ଘର ହୋଇପାରିବ ?

ବଳଭଦ୍ର—ହବ, ସତ୍ୟବନଟା ମଣିଷ ଖୁସିରେ ରଖିପାରିବେ, ଆଜ୍ଞା !

ଜଗନ୍ନାଥ—ସତେ ! (ଖୁସିରେ) ସୁବ୍ରତବାବୁ, ହୋଇଗଲା । ମୁଁ ବାଜି ମାରିଦେଲି । ଖାଲି ମୁଁ ଟିକେ ଏଇଠୁ ଦଲପତି ସିଂକୁ ପଚାରିଆସେ, ଆଉ କେଉଁ ଅଧିକା ହବ କି ସେଇଟାକରେ ରଖିବ । ଆପଣ ଥାନ୍ତୁ—

ସୁବ୍ରତ—ଆଜ୍ଞା, ଆସନ୍ତୁ । (ଜଗନ୍ନାଥ ଚାଲିଯାଇଚ)

ବଳଭଦ୍ର—ଆପଣ ବି କଣ ଯିବେ, ଆଜ୍ଞା ?

ସୁବ୍ରତ—ଏଁ, ହଇରେ ବଳି, ସେଇ ଯୋଉ ଝିଅଜଣକ ଆସିନାଇଁ, ତାକୁ ଟିକେ ଡାକଦେଲୁ—

ବଳଭଦ୍ର—ତାଙ୍କୁ ? ଆପଣ କଣ ତାଙ୍କୁ ଚହ୍ନନ୍ତି, ଆଜ୍ଞା ?

ସୁବ୍ରତ—ଆରେ, ସିଏ ପରା ମୋର ପଢ଼ାସାଙ୍ଗ ।

ବଳଭଦ୍ର—ଆପଣଙ୍କ ନା କହିଲେ ଆସିବେ ତ ?

ସୁବ୍ରତ—ଆସିବେନି, ମାନେ ?

ବଳଭଦ୍ର—ନାଇଁ, କାଳେ ଚିଡ଼ିବେ ?

ସୁବ୍ରତ—ଓହୋ, ତୋ ଉପରେ ଚିଡ଼ିବେ କାଇଁକି ମ ? କହିଲୁ, ଚିଡ଼ିବେ ? ଟିଉଟୋରିଆଲ କ୍ଲାସରେ ମୁଁ ଏପଟ ବେଞ୍ଚର ଦାଡ଼ିକୁ ବସେ ବୋଲି ସେ ଆଗ ବଳପଡ଼ିଯାଇ ସେଇ ପଟକୁ ପଟେ ମୋର ଆଡ଼କୁ ବସୁଥିବ । ଆଉ କହିଲୁ; ଚିଡ଼ିବ ! ଡାକ୍ ।

(ବଳଭଦ୍ର ଚାଲିଯାଇଚ । ଟିକେ ପରେ ଆସିଚ ଲିପି)

ସୁବ୍ରତ—ଲିପି, ମୁଁ ସେମାନଙ୍କୁ ବିଦା କରିଦେଲି ।

ଲିପି—ଧନ୍ୟବାଦ ।

ସୁବ୍ରତ—ଦେଖ ଲିପି, ତମେ ଏତେଟା ରିସ୍‌କ୍ ନବା ଉଚିତ ନୁହେଁ ।

ଲିପି—ଧନ୍ୟବାଦ ।

ସୁବ୍ରତ—ବହୁତ ଋଗିଯାଇଚ ଯେ ?

ଲିପି—ତମ ଉପରେ ନୁହେଁ ।

ସୁବ୍ରତ—ଓ…ରକ୍ଷା ।

ଲିପି—କଣ କହିବ ?

ସୁବ୍ରତ—ନା, ମୁଁ ସେଇଆ କହିବାକୁ ଆସିଥିଲି । ଦେଖ, ଏଇ କଲେଜପିଲେ ଯେମିତି ହଉଚନ୍ତି, ତମେ ଟିକିଏ ହୁସିଆରରେ ଗାଡ଼ିଟା ଡ୍ରାଇଭ କରିବା ଉଚିତ । ବୁଝୁନା, ତମ ଉପରେ ତ ଶୁଭଦୃଷ୍ଟିଟା ଥାଏ ସେମିତି ।

ଲିପି—ସେଥିପାଇଁ ମୁଁ କୃତାର୍ଥ ।

ସୁବ୍ରତ—ମାନେ ?

ଲିପି—ମାନେ, ସେଇଟା ମୋର ଛଇଳାପଣ ।

ସୁବ୍ରତ—ଓହୋ, ନା । ବର୍ତ୍ତମାନ ସବୁ କଲେଜର ଅବସ୍ଥା ସେଇଆ ।

ଲିପି—ତମେ ସେ ଭିତରୁ ନୁହଁ ।

ସୁବ୍ରତ—ମୁଁ ? ଆରେ, ନା । ତମେ ବୁଝୁନା, ମୁଁ ଚେଷ୍ଟା କଲେ ବି ହୋଇପାରିବିନି; କାରଣ ମୁଁ ଗୋଟାଏ ରିଟାୟାର୍ଡ଼ ଆଇ: ଏ: ଏସ୍: ଅଫିସରଙ୍କ ପୁଅ । ମୋର ଘରର ଖାନଦାନ ଅଛି ।

ଲିପି—ଓ, ଆଚ୍ଛା ! ହଉ ମୁଁ ଆସେଁ ।

ସୁବ୍ରତ—By the by, ଲିପି, ତମେ କୁଆଡ଼େ ଏଇଠିରହିବ ?

ଲିପି—କିଛି ଠିକ୍ ହେଇନି ।

ସୁବ୍ରତ—ଲିପି please, ତମେ ନିଷ୍ଚୟ ରୁହ ।

ଲିପି—କି ଅଶ୍ଚର୍ଯ୍ୟ ! ସେଇଟା ମମିଙ୍କ ଉପରେ ନିର୍ଭର କରେ ।

ସୁବ୍ରତ—ମୁଁ ତା'ହେଲେ ମାଉସୀଙ୍କୁ କହିବି । ସେ କାହାନ୍ତି ?

ଲିପି—ଭିତରେ ।

(ସୁବ୍ରତ ଭିତରଆଡ଼କୁ ଯାଇଛି । ଲିପି ମଧ୍ୟ ତା ପଛେ ପଛେ ଯାଇଛି । ବାହାରପଟରୁ ପ୍ରବେଶ କରିଛି ଜଗପାଣି ଏବଂ ତା ସହିତ ନିଶୀଥ)

ଜଗପାଣି—ନିଶୀଥବାବୁ ! ଯାଉ ଯାଉ ଫେରିଆସିଲି ଯୋଉଥି-ପାଇଁ ସେ କଥାଟା ଭୁଲି ଆଉ କଥାଟା କହିଯାଉଛି । ଆଉ ଜନ୍ମରୁ ଗୋଟିଏ କଥା···

ନିଶୀଥ—ସେଇଟା ବାପାଙ୍କ ପାଇଁ ବାକି ଥିଲେ ଚଳିବନି ?

ଜଗପାଣି—ଆଜ୍ଞା, ସେଇଟା ବାପା ନ କହି ବଳି କହିବା କଥା । ଖାଲି ଆପଣଙ୍କୁ ଦେଖିଲି ବୋଲି ପଚାରିଲି । ଏଇ ଧରନ୍ତୁ, କିଛି ଗୋଟାଏ ଇନ୍‌ଷ୍ଟାଲେସନ୍ ପାଇଁ ଯଦି କିଛି ଇନ୍‌ଭେଷ୍ଟମେଣ୍ଟ ହୁଏ ତା'ହେଲେ ତା'ର ପ୍ରପୋରସନ୍ କ'ଣ ଫିଫ୍‌ଟି ଫିଫ୍‌ଟି ନା ଗୋଟାଏ ତରଫକୁ ପୁରା ସହିବାକୁ ପଡ଼ିବ ?

ନିଶୀଥ—ଆପଣ ଯେତେଟା କଥା ପଚାରିଲେ ସେଥିରୁ କିଛି ବୁଝିଲି ନାହିଁ, ଆଜ୍ଞା !

ଜଗଦୀଶ—ଗୋଟାଏ ଉଦାହରଣ ଦେଲେ ବୁଝିବାକୁ ସୁବିଧା ହବ । କୁହନ୍ତୁ ତ, ଆପଣଙ୍କର ଉପର ମହଲକୁ ଉଠିବା ପାଇଁ ପାଣି ପମ୍ପ ଅଛି ?

ନଶୀଥ—ଓଭରହେଡ୍ ଟାଙ୍କି ଅଛି । ପାଣି ପମ୍ପ ନାହିଁ ।

ଜଗଦୀଶ—ଏଁ, ନାହିଁ ? ତା'ହେଲେ ତ ଇଏ ଗୋଟାଏ ଇମ୍ପୋଟାଣ୍ଟ ପଏଣ୍ଟ ମୁଁ ପଚାରି ନ ଥିଲି । ସେଥିପାଇଁ ଫେରିଲି । ଅଚ୍ଛା, ଧରନ୍ତୁ, ପାଣି ପମ୍ପଟାଏ ବସାଗଲା । ତା ପାଇଁ ଯୋଉ ଖର୍ଚ୍ଚଟା ତାକୁ ଆପଣ କରିବେ, ନା, ଆମେ କରିବୁ, କି ଦୁହିଁଙ୍କୁ ମିଶି କରିବାକୁ ପଡ଼ିବ ? ଅର୍ଥାତ୍ କ'ଣ ହବା ଉଚିତ ?

ନଶୀଥ—ସେମିତି କହିବାକୁ ଗଲେ ଆମର ତ ପ୍ରେସର ଉଠୁଚି ବୋଲି ଦରକାର ପଡ଼ୁନି । ଯଦି କାହାର ଦରକାର ହୁଏ, ତା'ହେଲେ ସେ ତା'ର କରିବ ।

ଜଗଦୀଶ—ନାଇଁ, କଥାଟା ଠିକେ ଏକତରଫା ହେଇଗଲା ବୋଧହୁଏ । ବାପାଙ୍କର କ'ଣ ଏଇ ମତ ?

ନଶୀଥ—ଆପଣ ସେଇଟା ବାପାଙ୍କୁ ପଚାରିଲେ ଠିକେ ଭଲ ହୁଅନ୍ତା ।

ଜଗଦୀଶ—ହଁ, ହଁ, ତା ଅବଶ୍ୟ; ତେବେ କଣ ମୁଁ ଭାବୁଥିଲି କି, ବର୍ତ୍ତମାନ ମେସର୍ସ ଦାଲ୍‌ପତ୍ ସିଂ କୁ କଥାଟା ପଚାରି ଟ୍ରୁଙ୍କ୍‌କଲ୍ ଦେଇ ଆସିବାକୁ ପଡ଼ିବ, ନାଁ ?

ନଶୀଥ—ଗୋଟାଏ କାମ କରିପାରନ୍ତି; ସବୁଗୁଡ଼ାକୁ ପଚାରି-ଆସିଥାନ୍ତୁ ନା···

ଜଗଦୀଶ—ହେଇପାରନ୍ତା । ତେବେ ସେଇଆ କରାଯାଉ । ଅବଶ୍ୟ ବଡ଼ କଥାଟାଏ ମନେ ହେଲା, ଅଉ ବୁଝିଗଲି ।

(ମନକୁ ମନ) ଉପରେ ଟାଙ୍କି ଅଛି, ହେଲେ ପାଣି ଉଠେଇବା ପମ୍ପ ନାହିଁ, ହୁଏତ ଯଥେଷ୍ଟ ପ୍ରେସର ନହୋଇ ପ୍ରଚୁର ପାଣି ରହୁ ନ ଥାଇ ପାରେ । ତେଣୁ ରାତି ଅଧରେ ଏଇ ଧଡ଼ଧଡ଼ ଟ୍ରକ୍ ଆସିଲା । (ନିଶୀଥ ଖସି ପଳେଇଛି) ବୁଝାବୋଝା କରିସାରିଲା ପରେ ଯଦି ହଠାତ୍ ପାଣି ଦରକାର ପଡ଼ିଲା ? ଆଚ୍ଛା, ନି··· (ହଠାତ୍ ବୁଲିପଡିଲା ବେଳେ ଦେଖିଲା ନିଶୀଥ ନାହିଁ) ଓ···ଚାଲିଗଲେ ? ନାଇଁ, ଏଥରଟା ମାଲିକକୁ ପ୍ରାଞ୍ଜଳ ଭାବରେ ସବୁ ବୁଝାଇବାକୁ ପଡ଼ିବ । ଶୀଘ୍ର ଅନୁମତିଟା ନେଇ ଚାଲିଆସିଲେ···ବାଜି ମାତ୍ ।

(ପୁଣି ବାହାରକୁ ଚାଲିଗଲା ଜଗଦୀଶ୍ । ଭିତରଆଡ଼ୁ ପ୍ରବେଶ କଲେ ମେଜର ଆଉ ସୁପ୍ରିୟା)

ମେଜର—ଏଇଠି ମୁଁ ଦିନରାତି ବସି ବସି କାଟିବି କେଇଟା ଦିନ ।

ସୁପ୍ରିୟା—ମେଜର ! ମୋର ଅନୁରୋଧ ଆପଣଙ୍କୁ ରଖିବାକୁ ପଡ଼ିବ । ଆପଣ ରାଜି ହୁଅନ୍ତୁ, ଦୁଇଟାମାସ ପାଇଁ ଆପଣଙ୍କର ଏ ଘରଟା ଦରକାର । ତେଣୁ ଆପଣ ନଜେ ନବା ଦରକାର ନାଇଁ । ମୁଁ ଆପଣଙ୍କୁ ଦି'ମାସ ପାଇଁ ଘର ଦେବି । ଆପଣ ମୋ ଠୁ ନେବେ ।

ମେଜର—ସୁପ୍ରିୟା, ସେଇ ପୁଅକୁ ବାହା କରିସାରିଲା ପରେ ମୋର ଦୁନିଆରୁ କର୍ତ୍ତବ୍ୟ ଶେଷ ହେବ । ତା'ପରେ ମୁଁ କଣ କରିବି ? ଏଇ ପଙ୍ଗୁ ଦେହ ଅଥଚ ଗତିଶୀଳ ମନନେଇ ମୁଁ କେମିତି ଦିନ କାଟିବି ?

ସୁପ୍ରିୟା—ମେଜର, ଆପଣଙ୍କର କିଛି ବ୍ୟସ୍ତ ହେବା ଦରକାର ନାହିଁ । ଆପଣ ଜାଣିନାହାନ୍ତି, ଏଇ ଦୁନିଆରେ ହଜାର

ହଜାର ସୁପ୍ରିୟା ଜନ୍ମ ନେଇଚନ୍ତି ଗୋଟିଏ ସୁପ୍ରିୟାର ଅଭାବ ମେଣ୍ଟାଇବା ପାଇଁ । ଆପଣ ବ୍ୟସ୍ତ ହୁଅନ୍ତୁନ । ଦୁଇମାସ ପରେ ଆପଣ ଆଉ କୁଆଡ଼େ ଯିବେ ? ଜଣେ ମାତ୍ର ଆପଣ । ଆପଣ ସବୁଦିନ ପାଇଁ ମଧ୍ୟ ଆମ ଘରେ ରହିପାରନ୍ତି ।

ମେଜର—ସୁପ୍ରିୟା ! ଏ ତମେ କଣ କହୁଛ ?

ସୁପ୍ରିୟା—ଅପ୍ରାସଙ୍ଗିକ ନୁହେଁ । ଦୁଇମାସ ପାଇଁ ନୂଆ ବାହା-ଘର ସକାଶେ ଘରଟା ଦରକାର ଆପଣଙ୍କର । ନିଜେ ଭଡ଼ାରେ ନ ନେଇ ଆପଣ ମୋଠୁଁ ନେଇଯିବେ । ତା'ପରେ ବାହାଘର ସରିଲା ପରେ ବି ଆପଣ ଆମ ଘରେ ରହିପାରନ୍ତି ।

ମେଜର—କିନ୍ତୁ···

ସୁପ୍ରିୟା—ଇଏ କିଛି କହିବେ ବୋଲି ଭାବୁଚନ୍ତି ? ମୋଟେ ନୁହେଁ । ସବୁବେଳେ ସେ ତାଙ୍କର ବ୍ୟବସାୟ ନେଇ ବ୍ୟସ୍ତ । ଘରେ ମୁଁ ଆଉ ମୋର ଝିଅ । ଝିଅ ବାହାଘର ପରେ ମୋ ଜୀବନଟା ବି ବଡ଼ ଅତିଷ୍ଠ ହୋଇପଡ଼ିବ, ମେଜର ! ସେଥିପାଇଁ ମୋ ଅପେକ୍ଷା ଇଏ ବେଶୀ ଚିନ୍ତିତ । ସବୁବେଳେ ଭାବନ୍ତି ଯେ ମୋ ପାଇଁ pastime କଣ ? ତେଣୁ ଆପଣଙ୍କୁ ପାଇଲେ ମୋ ଅପେକ୍ଷା ସେ ବେଶୀ ଖୁସି ହେବେ । ଆପଣ ଗୋଟିଏ ପରେ ଗୋଟିଏ ସେଇ ଯୁଦ୍ଧର କାହାଣୀ କହିବେ, ଆଉ ମୁଁ ଶୁଣିବି ।

ମେଜର—(ଯୁଦ୍ଧର କାହାଣୀ ଉପରେ ଚମକିପଡ଼ି ଆଗେଇ ଆସିଲେ) ଯୁଦ୍ଧର କାହାଣୀ ଶୁଣିବେ ?

ସୁପ୍ରିୟା—ହଁ, ଯୁଦ୍ଧର କାହାଣୀ ଶୁଣିବାକୁ ବହୁତ ଭଲଲାଗେ, କାହିଁକନା ସେଥିରେ thrill ଅଛି ।

ମେଜର—ସୁପ୍ରିୟା, ତମେ କଣ କଲ ସୁପ୍ରିୟା, ମୋର ସେଇ କଥାଗୁଡ଼ାକ ପୁଣି ମନେ ପକେଇଦେଲ ? ତୁମ ପାଇଁ ଯେଉଁଗୁଡ଼ାକ thrill ଆମ ପଇଁ କଣ ଜାଣ ? (ଏକଲୟରେ କହିଗଲେ) ଯେଉଁଦିନ ମୁଁ କୁମିଲ ସହରରେ ଆକ୍ରମଣ ପାଇଁ ଆଦେଶ ଦେଲି, ସେଇଦିନ ମୋ ଜୀବନର ଗୋଟାଏ ସ୍ମରଣୀୟ ଦିନ । ଆମେ ଆଗେଇ ଚାଲିଲୁଁ । କିଛିବାଟ ଗଲା ପରେ ହଠାତ୍ ଦେଖିଲୁଁ କେତୋଟା ବଙ୍କର ପଛକୁ ହଟି ପଳେଇ-ଗଲେଣି ସେତେବେଳକୁ ସେମାନେ । ହଠାତ୍ ସେଇ-ଗୁଡ଼ାକ ଅତିଶୀଘ୍ର ଅଧିକାର କରିନେଇ—ଯେତେ-ବେଳେ ମୁଁ ସେଗୁଡ଼ାକ ଖୋଲି ଦେଖିଲି—ମୋ ଆଖିକୁ ମୁଁ ନିଜେ ବିଶ୍ୱାସ କରିପାରିଲିନି ସେ ଦୃଶ୍ୟ । ଉସ୍...କେମିତି ମୁଁ କହିବି ? ପ୍ରାୟ ଷାଠିଏ ଜଣ ଖଣ୍ଡେ ସମ୍ପୂର୍ଣ୍ଣ ଉଲଗ୍ନ ରୂପସୀ, ସୁପ୍ରିୟା ! ସମସ୍ତଙ୍କ ଅଙ୍ଗରୁ ରୂପର ଦହନଶିଖା ଫୁଟି ବାହାରୁଚି । କିନ୍ତୁ ବିବସ୍ତ୍ରା ସେମାନେ । ମାସମାସ ଧରି ସେମାନେ ନିର୍ଯ୍ୟା-ତିତ ଲୁଣ୍ଠିତ ସେମାନଙ୍କର ନାରୀତ୍ୱ । ଜବରଦସ୍ତି ସେମାନଙ୍କୁ ଅପହରଣକରି, ସେଇଠି ଆଣି ରଖାଯାଇ ଥାଏ ! ଆଉ କାଳେ ସେମାନେ ଆତ୍ମହତ୍ୟା କରିବେ ସେଇଥିପାଇଁ ସୂତାଖିଏ ସୁଦ୍ଧା ଗୁଡିଦିଆଯାଇ ନ ଥାଏ ତାଙ୍କପାଖରେ । ଇସ୍, କି କରୁଣ ତାଙ୍କର କଥା ! ହୁଏତ ଦୁଇତୃତୀୟାଂଶ ତାଙ୍କ ଭିତରୁ ଆଶଙ୍କିତ,

ମାତୃଭୂମି ପ୍ରାପ୍ତି ଲଜ୍ଜାରେ ଜର୍ଜରିତ। ମୋର ମୁଣ୍ଡକୁ ଆହୁରି ପ୍ରଚଣ୍ଡଭାବରେ ରକ୍ତ ଚଢ଼ିଗଲା। ମୁଁ ଆହୁରି ପ୍ରବଳ ପରାକ୍ରମରେ ଶତ୍ରୁକୁ ଦମନ କରିବାରେ ଲାଗିଲି।

ସେଇ ପରିସ୍ଥିତି ମୋ ଅକ୍ତିଆରକୁ ଆସିଗଲା ପରେ ଦିନେ ରାତିରେ କିଛିଟା ବିଶ୍ରାମ ନେଉଥାଏଁ ଆମ campରେ। ହଠାତ୍ କାହିଁକି ମୋର ଇଚ୍ଛା ହେଲା ଟିକିଏ ସିଭିଲିୟାନ ଏରିଆରୁ ବୁଲି ଆସିବାକୁ। ଅନ୍ୟ ପୋଷାକରେ ରାତି ଅଧରେ ମୁଁ ଯେତେବେଳେ ବାହାରକୁ ଗଲି, ହଠାତ୍ ଗୋଟିଏ ଦୃଶ୍ୟ ମୋର ଆଖିରେ ପଡ଼ିଲା। ବେଶ୍ ନିରୋଳା ଗୋଟିଏ ସ୍ଥାନ— ସେଇଠି ଯୁବକ ଯୁବତୀ ଦୁଇଟି, ଦୁହିଁଙ୍କୁ ପ୍ରେମ ନିବେଦନ କରୁଚନ୍ତି ଏ ଅବସ୍ଥାରେ ବି···ସ୍ତ୍ରୀଆଡେ ତାଙ୍କର ନଆଁ ଜଳୁଛି, ତଥାପି···(ମେଜରଙ୍କ ଉପରୁ ଆଲୋକ ଚାଲିଯାଇଚି। ଆଉ ଗୋଟାଏ ଜୋନ୍‌ରେ କେବଳ ଆଲୋକ ପଡ଼ିଚି। ଦେଖା ଯାଉଛି ସୁବ୍ରତ ଆଉ ଲିପି କଥାବାର୍ତ୍ତା କରୁଚନ୍ତି।)

ସୁବ୍ରତ—ତଥାପି ତମେ ସେଇ ରାଗଟା ଭୁଲିପାରୁନା···? ଲିପି ! ମୋର ଗୋଟାଏ ଅନୁରୋଧ ରଖ। ଏ ସ୍ୱପ୍ନଟାକୁ ମୋର ତମେ ଭାଙ୍ଗି ଦିଅନା।

ଲିପି—ଆଃ, ସୁବ୍ରତ, କଣ ତୁମେ କହୁଚ ଯେ ? ଏଇଟା କଣ ସେଇକଥା ଭାବିବାର ଗୋଟାଏ ପରିସ୍ଥିତି ?

ସୁବ୍ରତ—ମୁଁ ଜାଣେ। ତେବେ ବି ମୁଁ କହୁଚି କାହିଁକି ଜାଣ ? ଆଉ ହୁଏତ ଏତେ ନିରୋଳା ମୁହୂର୍ତ୍ତ ମୁଁ ଖୁବ୍

ଶୀଘ୍ର ପାଇବନ । ଗୋଟାଏ କଥା ମୋର ରଖ । ତମେ ଯେକୌଣସିମତେ ଏ ଘରଟାକୁ ନଅ । ତମେ ଏଇଠି ରହିବ···କିଛି ନ ହେଲେ ବ ଅନ୍ତତଃ ଟିକିଏ କଳ୍ପନା କରିବାକୁ ସୁଯୋଗ ପାଇବ ।

ଲିପି—ଆରେ, ଘରଟାକୁ ନେବା କଣ ମୋ ହାତଉପରେ ନର୍ଭର କରେ ?

ସୁବ୍ରତ—ତମେ ଚାହିଁଲେ ନିଶ୍ଚୟ ହବ···ତମେ ମାଉସୀଙ୍କୁ କୁହନା···

ଲିପି—ଓହୋ ସେ ବିଷୟରେ ମମି ଯାହା ଠିକ୍ କରିବ କିନ୍ତୁ ମୋର ମତ ଯଦି ନଆଯାଏ, ତାହେଲେ ମୁଁ କହିବି ଏ ଘର ନେବାକୁ ।

ସୁବ୍ରତ—ଲିପି ! ତାହେଲେ···ଲିପି···ତମେ···ଇସ୍, ଏଟେଟା (ଆଲୋକ ମିଳେଇ ଯାଇଚି ଲିପି ଆଉ ସୁବ୍ରତ ଉପରୁ ସେମାନେ ରୁଇ ଭିତରେ ରହିଚନ୍ତି । ପୁଣି ଆଲୋକ ଆସିଚି ମେଜରଙ୍କ ଉପରେ—ସତେ ଯେମିତି ସେ କହି ଚାଲିଚନ୍ତି ।)

ମେଜର—ସେଇ ଏକାପ୍ରକାର ଆକୁଳ ନିବେଦନ, ଅଧାକୁହା ଅକୁହା ଭାଷା, ସ୍ଥାନକାଳ ପାତ୍ରର ବନ୍ଧର ନାହିଁ··· କିନ୍ତୁ ସମସ୍ତ ପାଇଁ ମୁଁ ମଧ୍ୟ ଅଜ୍ଞାତକୁ ପ୍ରେମକୁ କରିବାର ପରିକଳ୍ପନା କରୁଥିଲି । ହଠାତ୍ ମନେ ପଡ଼ିଗଲା (ଚିତ୍କାର) duty···March on...

(ସେଇ ଅନ୍ଧାରଭିତରୁ ସୁବ୍ରତ ବାହାରିଆସି)

ସୁବ୍ରତ—ମାଉସୀ ! ଆମକୁ ଡାକଲେ କି ?

ସୁପ୍ରିୟା—ନା, ଆମେ ଯୁଦ୍ଧଗପ ଶୁଣୁଚୁଁ ।

ସୁବ୍ରତ—ଆମକୁ ଭଲଲାଗେ ଯେ···ଆମେବ ଏଠି ଥାଇ ଶୁଣୁଚୁ ।

(ପୁଣି ଚାଲିଯାଇଚ ଅନ୍ଧାର ଭିତରକୁ)

ମେଜର—ମୋତେ ହସ ଲାଗିଲା । ଏ ଅବସ୍ଥାରେବ ପ୍ରେମ ସମ୍ଭବ ! ମୁଁ campକୁ ଫେରୁଥିଲି ଗୋଟାଏ ଚେକଅପ୍ କରି-ନେବାପାଇଁ ସମସ୍ତଙ୍କୁ । ସାଇଣ୍ଡ ନେଲି···ହଠାତ୍ campର ଅଦୂରରେ ଗୋଟିଏ ଛୋଟ ପାହାଡ଼ ପାଖରେ ଗୋଟାଏ ଛାଇଭଳି କଣ ଦେଖାଗଲା । ସେ ସ୍ଥାନଟା ବେଶ ନିର୍ମଳ । ବାଇନୋକୁଲେରରେ ଦେଖିଲି ଅସ୍ପଷ୍ଟ ହେଇ ଅନ୍ଧାରିଆ ଦେଖାଗଲେ ବି ଜଣାଗଲା ଜଣେ କେହି ବସିଚି । କାଳେ କୋଉ ଶତ୍ରୁ ବା ବିଶ୍ୱାସ-ଘାତକ ହେଇଥିବ ଭାବି, ଖୁବ ସନ୍ତର୍ପଣରେ ଆଗେଇଲି ।

(ସେମିତି ଆଲୋକ ଲିଭିଯାଇଚ ମେଜରଙ୍କ ଉପରୁ । ବଗିଚାପଟକୁ ଆଲୋକିତ ହେଇ ଦେଖାଯାଇଚ ଘରର ପଛବଗିଚା ଆଡ଼କୁ ବସିଚି ନିଶୀଥ)

ମେଜର—(ଅନ୍ଧାରରେ) ପାଖକୁ ଯାଇ ଅତି ନିକଟରୁ ଦେଖିଲି, ସେ ଆଉ କେହି ନୁହେଁ, ମୋର ବୀର ଜବାନଙ୍କଭିତରୁ ଜଣେ ଗୋଟାଏ ପଥର ସଙ୍ଗରେ କଥାଭାଷା କରି-ଚାଲିଚି । ବହୁଦୂରରେ ଛାଡ଼ିଆସିଚି ତାର ପ୍ରାଣର, ସୁପ୍ରିୟାକୁ ।

ନିଶୀଥ—ହଠାତ୍ ଯଦି ଏମିତି ଗୋଟାଏ ପଥର ଜୀବନ୍ୟାସ ପାଇ ତମେ ହେଇଯାଅ ତା'ହେଲେ···ତା'ହେଲେ ମୁଁ କେତେକଥା କହିଯାଆନ୍ତି, ଊଳ ! ଭୀଷଣ କଷ୍ଟ-

ଦାୟୀକ ଏ ବିଚ୍ଛେଦ । ପ୍ରକୃତରେ ଜାଣି ବି ଜାଣିପାରୁନି ଆମର ଏଇ ବିଚ୍ଛେଦଟା ଏତେ ଦୂରରେ ଥାଇ ଅନୁଭବ କରୁଚନ୍ତି ନା

(ପୁଣି ନଶୀଥ ଉପରୁ ଆଲୋକ ମିଳେଇଯାଇ ମେଜର ଉପରକୁ ଆସିବ । ବଗିଚା ଭିତରୁ ସିଲହଟରେ ଦେଖାଯାଏ ନଶୀଥଆଉ ସେଇ statueଟା । ମେଜର କହିଚାଲିଚନ୍ତି—)

ମେଜର—ମୋର ହଠାତ୍ କର୍ତ୍ତବ୍ୟଜ୍ଞାନ ଫେରିଆସିଲା । ନ ଜାଣିଲି ଭଲ ଚିତ୍କାର କଲି—ଦୁଷ୍ମନ !

ନଶୀଥ—(ଚମକିପଡ଼ି ଆଲୋକ ଭିତରକୁ ଆସି) ଆଜ୍ଞା, ମତେ ଡାକିଲେ କି ?

ସୁପ୍ରିୟା—ନା, ସେ ଯୁଦ୍ଧକଥା କହୁଚନ୍ତି । ଇସ୍ ! କେତେ thrill

ନଶୀଥ—ମୋତେ ଭାରି ଭଲଲାଗେ । ମୁଁ ଆସୁଚି ଶୁଣିବି ସେ ।

(ସେଇଠିକି ଫେରିଯାଇବ)

ମେଜର—ସେଇ ଯୁଦ୍ଧ ଭିତରେ ମୁଁ କେବଳ ଦେଖିବି ସେଇ-ମାନେହିଁ ସଚ୍ଚା ସୈନିକ ଯିଏ ସ୍ୱଭାବ ନକାଶରେ ବ୍ୟସ୍ତ ଆଉ ସେ ସ୍ୱଭାବ ନକାଶ ପ୍ରେମର ନୁହେଁ, କର୍ତ୍ତବ୍ୟର ।

(ସେମିତି ଆଲୋକ ମେଜରଙ୍କ ଉପରୁ ଚାଲିଯାଇଚି । ଆସ୍ତେ ଆସିବ ଗୋଟାଏ କଣକୁ ! ସେଠି ଦେଖା-ଯାଇବ, ଗୋଟିଏ ଟ୍ଲେଟ ଟେପ୍ ଆଣି ଘରିମତ ମାପି-ଚାଲିବ ଜଗନ୍ନାଥ । ତା'ସାଙ୍ଗରେ ବଳଭଦ୍ର ଧରିବ)

ଜଗନ୍ନାଥ—ଓହୋ, ଟେପ୍‌ଟା ଓଲଟା ହେ, ଧରୁଜାଣିନା ? ବୁଲେଇକରି ଧର ।

ବଳି—ଧରିଛି, ଆଜ୍ଞା !

ଜଗଦୀଶ—ହୁଁ, ବାଇଶ ଆଉ ନଅ କେତେ ହେଲା ?

ବଳି—ଏକତିରିଶ, ଆଜ୍ଞା !

ଜଗଦୀଶ—ଓହୋ, ବାଇଶିନୁଆଁ କେତେ ?

ବଳି—ଆଜ୍ଞା ··(କହିପାରିନ)

ଜଗଦୀଶ—କଣ, ଆସୁନାଇଁଟି ? ସଉଦାପତ୍ର ସବୁଥିରେ ତ ଭୁଲ କରୁଥିବ, ଆଉ ।

ବଳି—ଆଉ ପଣିକିଆ ମନେଅଛି ?

(ପୁଣି ଆଲୋକ ମିକ୍ସ କରିଛି ମେଜରଙ୍କ ଉପରକୁ)

ମେଜର—ଏଇଟାହିଁ ହେଲା କର୍ତ୍ତବ୍ୟ ।

ଜଗଦୀଶ—(ଚମକପଡି ଆଲୋକକୁ ଆସି) ଆଜ୍ଞା, ମତେ କଣ କହିଲେ କି ?

ସୁପ୍ରିୟା—ନା, ସେ ଯୁଦ୍ଧକଥା ।

ଜଗଦୀଶ—ହଁ, ଆଜ୍ଞା, ଆମେ ଶୁଣୁଛୁ ମୋ କାନଟା ସିଆଡ଼େ ଯେ···

(ପୁଣି ଆଲୋକ ପଡ଼ିଛି କେବଳ ମେଜରଙ୍କ ଉପରେ)

ମେଜର—ସବୁଠାରୁ ମୋର ସ୍ମରଣୀୟ ଘଟଣା କଣ ଜାଣନ୍ତି ? ମୋର ଗୋଟାଏ ଅଭିଜ୍ଞତା ହେଲା ଯେ ଦୁଇଟି ଜିନିଷକୁ କେବେହେଲେ ବିଶ୍ୱାସ କରିବାର ନୁହେଁ । ଆଉ ସେ ଦୁଇଟା ହେଲା ଟଙ୍କା ଆଉ ନାରୀ··· ଟଙ୍କାର ପ୍ରଲୋଭନ, ନାରୀର ଆକର୍ଷଣ ।

(ପୁଣି ଆଲୋକ ମେଜରଙ୍କ ଉପରୁ ଯାଇଛି ମି: ସ୍ୱାମୀ ଅସିଚନ୍ତି । ଟିକେ ଠାରିଚନ୍ତି ସୁପ୍ରିୟାକୁ ଅନ୍ୟଆଡକୁ ଡାକନେଇ)

ସ୍ୱାମୀ—ମିସେସ୍ ପଟ୍ଟନାୟକ ! ଟିକେ ଆସିବେ ।

ସୁପ୍ରିୟା—(ଆଗେଇଯାଇ) କଣ ହେଲା ?

ସ୍ୱାମୀ—ହୁଏତ ମୁଁ ଯଦି ସମସ୍ତଙ୍କ ଆଗରେ ଆପଣଙ୍କୁ ଚେକ କାଟିଦିଏ ତା'ହେଲେ ସମସ୍ତେ ମନେ ଈର୍ଷା କରିପାରନ୍ତି କିମ୍ବା ଆପଣଙ୍କୁ ଭୁଲ ବୁଝିପାରନ୍ତି । କିନ୍ତୁ ମୁଁ ତା ଚାହେଁନା ।

ସୁପ୍ରିୟା—ଆହା, ସେଥିରେ କ'ଣ ଅଛି ? ଅନ୍ୟକୁ ଈର୍ଷା କରିବାକୁ ଦେବାରେ ଯେଉଁ ଆନନ୍ଦ ଅଛି ନା···

ସ୍ୱାମୀ—ନା, ନା ମିସେସ୍ ପଟ୍ଟନାୟକ, ଏତେ ହଠାତ୍ ଠିକ ହବନି ।

ସୁପ୍ରିୟା—ଆରେ, ସେଇଟା ତ ମୋର ଗର୍ବ ।

ସ୍ୱାମୀ—ତଥାପି ମୁଁ hard cash ପାଞ୍ଚଶ ଟଙ୍କା ନେଇ ଆସିଛି । ଆପଣ ରଖିଥାନ୍ତୁ, ଯଦି ଦରକାର ପଡ଼େ······

ସୁପ୍ରିୟା—(ଅପ୍ରତିଭ) ନାଇଁ ନାଇଁ, ମୋର ଦରକାର ନାଇଁ ।

ସ୍ୱାମୀ—ଆରେ, ମୁଁ କଣ ଦାନ ଦେଉଚି ଆପଣଙ୍କୁ ? ସେ ଶକ୍ତି ମୋର କାହିଁ ? ଧାରଦିଏ ତ ଦେଉନି । କାରଣ ଏତେଟା ସାହସ ଏ ଅଧୀନ କେବେ କରିବନି । ଖାଲି କେଇଟି ଘଣ୍ଟା ପାଇଁ ମୁଁ ଟଙ୍କାଗୁଡ଼ାକର ରହିବା ସ୍ଥାନର ପରିବର୍ତ୍ତନ କରୁଚି ।

ସୁପ୍ରିୟା—ଅଛା, ଆପଣ କାଇଁକି ଘର ନବା କଥା ଉଠେଇବେ କି ? ଆପଣ କହିବେ, ମିସେସ୍ ପଟ୍ଟନାୟକ ପୁରାପୁରି ଘରଟା ନଅନ୍ତୁ ବୋଲି । ମୁଁ ନେଇସାରିଲା ପରେ ଆପଣ ମୋଠୁଁ ଚଲଟା ନେଇନେବେ ।

ସ୍ୱାମୀ—ଆଇଡ଼ିଆ ଚମତ୍କାର, ସୁପ୍ରିୟା ଦେବୀ !

(ପୁଣି ଯେମିତି ଆଲୋକ ପ୍ରତିବଦଳ ହେଉଛି)

ମେଜର—ଆଜି ଯୌଉଦିନ ସେଇଭଳି ଏକ ସୁପ୍ରିୟାଙ୍କୁ ମୁଁ ଦେଖିଲି ଯେ ।

ସୁପ୍ରିୟା—(ଫେଲ୍‌ପଡ଼ି) ଏଁ, ମତେ କିଛି କହୁଲେ, ମେଜର ?

ମେଜର—କ'ଇଁ, ସେଇ ଯୁଦ୍ଧଗପ । ଭାରି thrill ଅଛି ସେଥିରେ ।

ସୁପ୍ରିୟା—ହଁ ପଗ, ମୁଁ ଏକମନରେ ସବୁ ଶୁଣୁଚି । ଏଇ ମିଷ୍ଟର ସ୍ୱାମୀ, ଆଉ ଇଏ ମେଜର ଶର୍ମା ଏଇ war operationରୁ ଫେରିଚନ୍ତି ।

(ଆଲୋକ ପୁଣି ପାର୍ଗ ମଞ୍ଚଟାକୁ ଆସିଯାଇଛି)

ସ୍ୱାମୀ—Oh, wonderful ! ସତରେ ମୋର ଗୋଟାଏ ବଡ଼ ଅବଶୋଷ ରହିଗଲା । ମୁଁ ପିଲାଦିନୁ ଭାରି war minded ଥିଲି । ଗୋଟିଏ ପୁଅ ବୋଲି ·ସିନା ଘରେ ଛାଡ଼ିଲେନି···

ମେଜର—ଘରେ ଛାଡ଼ିଲେନି (ଖୁବ ଜୋରରେ ହସିଚି) ଆରେ, ମୁଁ ବି ତ ଗୋଟାଏ ପୁଅ ଥିଲି; ମତେ ବି ତ ଘରେ ଛାଡ଼ୁ ନଥିଲେ । କହି ପାରିବେ ମିଷ୍ଟରସ୍ୱାମୀ କେତୋଟା ପୁଅ ହୋଇଥିଲେ ଘରେ ଛାଡ଼ିଥାନ୍ତେ ? ପାଞ୍ଚ, ଦଶ, ପଚିଶ, ଶହେ ? ଏଇକଥା ମୋ ମୁଣ୍ଡରେ ପଶିଥିଲା ବୋଲି ମୁଁ କିନ୍ତୁ ଯୁଦ୍ଧରେ ଯାଇପାରିଥିଲି ।

( ଖୁବ ଜୋରରେ ହସିଲେ । ଭାରି ଖାଉସ ସେ ହସ । ସେଇ ହସ ଶୁଣି ସମସ୍ତେ ଚାଲିଆସିଚନ୍ତି ତାଙ୍କପାଖକୁ)

ଲିପି—ଆରେ ମମି, ତାଙ୍କର କ'ଣ ହେଲା ?

ମେଜର—ମୋର ? ସେଇ ଯୁଦ୍ଧ । ବାଓନେଟ୍, ରାଇଫଲ୍, ମର୍ଟାର, ଟ୍ୟାଙ୍କ, କୁଢ଼ କୁଢ଼ ଶବ, ପଙ୍ଗୁ ଦେହ, ଆଉ ତା'ର ସଙ୍ଗରେ ଶହ ଶହ ସୁପ୍ରିୟାଙ୍କର ସୀମନ୍ତର ସିନ୍ଦୂର । ହାଃ ହାଃ ।

(ହସିଉଠିଚି । କିନ୍ତୁ ଏ ହସଟା ଅତି ବିକଟାଳ । ମଞ୍ଚରେ ସେତେବେଳକୁ, ଲିପି, ସୁପ୍ରିୟା, ସୁବ୍ରତ, ସ୍ୱାମୀ, ମେଜର, ନାଶୀଥ, ଜଗନ୍ନାଥ, ବଳଭଦ୍ର—ସମସ୍ତେ ଠିଆହୋଇ ଶୁଣୁଚନ୍ତି ସେଇ ଯୁଦ୍ଧର କାହାଣୀ ମେଜରଙ୍କଠାରୁ । ଏତିକିବେଳେ ହଠାତ୍ ଜଣେ ଯୁବକ ପ୍ରବେଶ କଲା ଭିତରକୁ । ସମସ୍ତଙ୍କୁ ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁଗଲା ଜଣ ଜଣ କରି । ସମସ୍ତେ ଆଶ୍ଚର୍ଯ୍ୟରେ ତାକୁ ଚାହିଁରହିଲେ । କିଛି ସମୟ ପରେ ସେ ତା ହାତର ଗୋଟାଏ ତାଲିକା କାଢ଼ିଚି । ସେ କାଗଜ ଦେଖି ଜଣ ଜଣ କରି ପଚାରୁଚି—)

ଯୁବକ—ଆପଣ ମିଷ୍ଟର ସ୍ୱାମୀ ?

ସ୍ୱାମୀ—ଆଜ୍ଞା, ହଁ ।

ଯୁବକ—(ତାଲିକା ଦେଖି) ଆପଣ ମିସେସ ପଟ୍ଟନାୟକ ?

ସୁପ୍ରିୟା—ହଁ ।

ଯୁବକ—ଆପଣ ମେଜର ରାଘବ ଶର୍ମା··· ?

ମେଜର—ହଁ ।

ଯୁବକ—(ତାଲିକା ଦେଖି) ଆପଣ ଜଗନ୍ନାଥ···ମେସର୍ସ ଦୁଲିଚନ୍ଦ୍ର ସିଂହ ?

ଜଗନ୍ନାଥ—ଆଜ୍ଞା ।

(ଯୁବକ କାଗଜଖଣ୍ଡିକ ଭାଙ୍ଗି ପୁଣି ଧରିଚି । ଥରେ

ସମସ୍ତଙ୍କୁ ଅନେଇସାରିଲା ପରେ ଯିବାକୁ ବାହିଁଚି ।
ନଶୀଥ ତା'ପାଖକୁ ଯାଇ)

ନଶୀଥ—ମୁଁ ନଶୀଥ—ଏଘରର ।

ଯୁବକ—(ଗାଡ଼େଇକରି ଅନେଇ) Thanks !

ଲିପି—କିନ୍ତୁ ଆପଣ କିଏ ?

ଯୁବକ—(ତାକୁ ଅନେଇଛି)
(ସୁବ୍ରତ ଯାଇ ତା'କୁ ଧରିବାକୁ ଚେଷ୍ଟା କରିଛି)

ସୁବ୍ରତ—କିଏ ଆପଣ ?

ଯୁବକ—ହେଇ, ପାର୍ଟି କରନ୍ତୁ ! (ଛିଣ୍ଡାଇଦେଇ ପଳେଇଛି)

ନଶୀଥ—(ଯୁବକଟି ଚାଲିଗଲା ପରେ) ଏ ! କିଏ ସେ ? କିଏ
ଆସି ଚାଲିଗଲା ?

ସୁପ୍ରିୟା—ଆଜ୍ଞ କଣ କେହି କିଛି କହୁନାହାନ୍ତି ଯେ ? ସେ
ଲୋକଟା ପଳେଇଗଲା ।

ଲିପି—ଆପଣ ତାକୁ କେହି ଚିହ୍ନିନାହାନ୍ତି ? ହୁଏ ତ ସେ
ଆସି···

ସ୍ୱାମୀ—ସେ ଆମ ନାଁ ଜାଣିଲା କେମିତି ?

ଜଗନ୍ନାଥ—ଲେଖିକରି ସବୁ ଆଣିଛି ।

ସ୍ୱାମୀ—କିନ୍ତୁ ମିଷ୍ଟର ପଟ୍ଟନାୟକ ! ଆପଣଙ୍କର କେହି ଚାକର
ନୁହଁ ?

ନଶୀଥ—ନା ।

ସୁପ୍ରିୟା—ତା'ହେଲେ ସେ କିଏ ମେଜର ? ସେ କୋଉ ଡକାୟତ
ନୁହଁ ତ ?

ମେଜର—ଏଁ, ଡକାୟତ ନୁହେଁ···spy !
(ସମସ୍ତେ ଚମକପଡ଼ୁଛନ୍ତି ଏଇକଥା ଉପରେ)

ସମସ୍ତେ—spy !

ମେଜର—ତାକୁ ସୁଟ୍ କରିଦିଅ । ରାଇଫଲ୍...ତାକୁ ଛାଡ଼ିଦିଅ ନାହିଁ...ପଳେଇଗଲା, ବୋଧହୁଏ ରାଇଫଲ୍...

(ସମସ୍ତେ 'ରାଇଫଲ୍, ରାଇଫଲ୍, ସେ ଯିବା ଉଚିତ ନୁହେଁ, ତାକୁ ଧର, ତାକୁ ମାରିଦିଅ' ଏମିତି ଚିତ୍କାର କରୁ-ଚନ୍ତି । ଏଇ ସମୟରେ ନଶୀଥ ଭିତରକୁ ଦଉଡ଼ିଯାଇ ରାଇଫଲ୍ଟାଏ ନେଇଆସିଚି)

ନଶୀଥ—ଏଇଟା ବାପାଙ୍କ ରାଇଫଲ୍, ଲୋଡେଡ଼୍, କିନ୍ତୁ ମାରିବ କିଏ ?

ମେଜର—ମୁଁ, ମୁଁ ମାରିବି । ଏଇ ହାତରେ ତାକୁ ଆଜି ମୁଁ ଶେଷ କରିଦେବି । ବହୁତ ଦିନରୁ ରାଇଫଲର ଟ୍ରିଗାର ଉପରେ ଆଙ୍ଗୁଠି ରଖିନି । ମତେ ଦିଅ ।

(ରାଇଫଲ୍ ନେଇ ଆଗେଇଗଲେ । ରାଇଫଲ୍ ଉଠେଇ ଲକ୍ଷ୍ୟ କଲେ । ତା'ପରେ ନିରାଶ ହୋଇ କହିଲେ)

ନା ନା, ଡିଅର ଫ୍ରେଣ୍ଡସ୍, ଆଉ ହବନି ବୋଧହୁଏ । ସେ ରେଞ୍ଜ୍ ବାହାରକୁ ଚାଲିଯାଇଚି, ଆଉ ଫାୟାର କରି କିଛି ଲାଭ ନାହିଁ ।

ସୁପ୍ରିୟା—ତା'ହେଲେ ?

(ସମସ୍ତେ ଆତଙ୍କିତ । ହଠାତ୍ ମେଜର ଏଇମାନଙ୍କ ଆଡ଼କୁ ବନ୍ଧୁକ ଲକ୍ଷ୍ୟ କରି ଚିତ୍କାର କରିଉଠିଲେ)

ମେଜର—ହ୍ୟାଣ୍ଡସ୍ ଅପ୍ । I say...ସମସ୍ତେ ହାତ ଉପରକୁ ଉଠାଅ । ସେ ହୁଏତ spy ନ ହୋଇ ଗୁଇନ୍ଦା ହୋଇପାରେ ! କାରଣ ମୁଁ ଜାଣିବାକୁ ଚାହେଁ, ତମ-ମାନଙ୍କ ଭିତରୁ କିଏ ବିଶ୍ୱାସଘାତକ ଅଛି ?

ନ ହେଲେ ସେ ତମମାନଙ୍କର ତାଲିକା କରି ଆଣି-
ଥିଲି କାହିଁକି ?
(ସମସ୍ତେ ଆତୁର ଚମକପଡ଼ ହାତ ଉଠେଇଲେ)
କ୍ରୁଦ୍ଧ, surrender I say surrender ! ନ
ହେଲେ କାହାକୁ ପ୍ରାଣରେ ଛାଡ଼ିବିନି । ଦେଶଦ୍ରୋହୀ,
ବିଶ୍ୱାସଘାତକ କିଏ ତମ ଭିତରୁ ? ଦେଶର ଏ
ଦୁର୍ଦ୍ଦିନବେଳେ କିଏ ପଛରୁ ଛୁରିକାଘାତ କରୁଚ—
ଗୋଟାଏ ମେଜର ଭାବରେ ମୁଁ କେବେ କ୍ଷମା ଦେଇ-
ପାରିବିନି ।
(ଏତିକିବେଳେ ଉପରୁ ଓହ୍ଲେଇଆସିଚନ୍ତି ମିଷ୍ଟର
ପଟ୍ଟନାୟକ ପୂଜା ଶେଷରେ । ଏସବୁ ଦେଖି ଚମକ-
ପଡ଼ି)
ମିଃ ପଟ୍ଟନାୟକ—କିଏ ଆପଣମାନେ ?
(ଏକଥା ଶୁଣି ସମସ୍ତେ ସଚେତ ହେଇଯାଇଚନ୍ତି)
ନଶୀଥ—ବାପା, ଆପଣ ଏମାନଙ୍କୁ ଡକେଇଥିଲେ । ବହୁତ-
ବେଳୁ ଆସି ଏମାନେ ବସିଚନ୍ତି ।
ମିଷ୍ଟର ପଟ୍ଟନାୟକ—(ଖାଲି ଅନେଇଲେ କିଛି ନ ବୁଝିଲାଭଳି)
ସୁପ୍ରିୟା—ମିଷ୍ଟର ପଟ୍ଟନାୟକ, ପୂଜାରୁ ଉଠି ବୋଧହୁଏ କିଛି
ମନେ ପକେଇ ପାରୁନାହାନ୍ତି ।
ସ୍ୱାମୀ—ନା ନା, ସେ କଥା ନୁହେଁ ।
ପଟ୍ଟନାୟକ—ଭୁଲ । ମୁଁ ଏତେଟା ବିସ୍ମୃତ ନୁହେଁ । ମୁଁ ଠିକ୍ ମନେ-
ପକେଇପାରୁଚି । କଥା ହେଲା, ପରିଚୟର ଆଦାନ-
ପ୍ରଦାନଟା ହେଇନାହିଁ, ବା ମୁଁ କରେଇଦେଇନି ।
ସେଥିପାଇଁ···

ସୁପ୍ରିୟା—ନା, ନା, ଆମର ସବୁ ପରିଚୟ ହୋଇସାରିଚି । ତଥାପି formality ଦୃଷ୍ଟିରୁ କରିବା ଉଚିତ । ମୁଁ ସୁପ୍ରିୟା ପଟ୍ଟନାୟକ, ଆଉ ଇଏ ମୋ ଝିଅ ଲିପି । ମୁଁ ଘରଟାକୁ ରେସିଡେନ୍‌ସିଆଲ ପରପସ୍‌ରେ ନେବି । ଦେଖନ୍ତୁ, ମୋର ବହୁତ ଦିନର ପରିକଳ୍ପନା ଏଇଠି ଗୋଟାଏ ଘର ନବାକୁ । ନଦୀକୂଳ, ବେଶ ଖୋଲା ପବନ…

ସ୍ୱାମୀ—ମୁଁ ହେଲି ମିଷ୍ଟର ସ୍ୱାମୀ, ଇଣ୍ଟରନ୍ୟାସନାଲ ମ୍ୟାନେଜିଂ ଡିରେକ୍ଟର, ଲୋଗାସ । ମୋର ଫାର୍ମର ଅଫିସ ପାଇଁ ମୋର ଏଇଟା ଦରକାର । ଏଥିପାଇଁ ଆପଣ ଯାହା ଚାହିଁବେ…

ଜଗଦୀଶ—ଆଜ୍ଞା, ମୁଁ ଜଗଦୀଶ ଦୁବେ । ମେସର୍ସ ଦଲପତ୍ ସିଂ ପ୍ରାଇଭେଟ ଏଣ୍ଡ କୋଃ ର ମୁଁ ହେଲି ଏକାଉଣ୍ଟାଣ୍ଟ କମ୍ କେୟାରଟେକର । ମୋର ଜାଣିବା ଦରକାର ଯାହା ଥିଲା, ମୁଁ ଜାଣିସାରିଚି । ଖାଲି ଟଙ୍କାଟା କଥା ଠିକ୍ କରି ମୁଁ ଚାଲିଯିବି । ଘରଟା ଠିକ୍ ହବ ଆମର ଅଫିସ କମ୍ ଷ୍ଟୋର ପାଇଁ ।

ମେଜର—ମୋର ମାତ୍ର ଦୁଇଟା ମାସ ପାଇଁ ।

ସୁପ୍ରିୟା—ଓହୋ, ମେଜର ! (ଆଖି ଠାରିଲେ)

ମେଜର—(ମନେପଡ଼ିଚି) ଓ, ହଁ, ସେଇ ଏକାକଥା, ସୁପ୍ରିୟା ଦେବୀ ନେଲେ ବି ଚଳିଯାନ୍ତା ।

ସ୍ୱାମୀ—ତା’ମାନେ…(ସୁପ୍ରିୟା ଆଡ଼କୁ ସନ୍ଦେହରେ ଚାହିଁଲେ)

ସୁପ୍ରିୟା—ଏକାକଥା, ଆପଣଙ୍କର ଚାଲ, ଆଉ ମୋର ଉପର ! ତେଣୁ ମୁଁ ପୂରାଭଡ଼ାଟା ଉପରେ ଡିସାଇଡ୍ କରିପାରେ ।

ନଶୀଥ—ବାପା, ଆପଣ ଘର ଭଡ଼ା ଦେବେ ?

ପଟ୍ଟନାୟକ—ଏଁ, ହଁ, ଆଜ କଣ କରିବ ତୁ ଆମେରିକା ଯିବୁ ? ମୁଁ ଗାଁକୁ ଚାଲିଯିବି । ବୋଉ···ଆଜ ଘରଟା···

ଜଗପାଣ—ଭଡ଼ାକଥାଟା ଯଦି ଗୋଟାଏ ସ୍ୱିଣ୍ଡଲ୍ ଦେଇଥାନ୍ତେ ସେଇ ଖବରକାଗଜରେ ତା'ହେଲେ ମୁଁ ଏକବାରେ ପ୍ରସ୍ତୁତ ହୋଇ ଆସିଥାନ୍ତି ।

ପଟ୍ଟନାୟକ—ଏ, ହଁ, ଛପାହୋଇଥିଲା ବୋଧହୁଏ ।

ସମସ୍ତେ—ନା, ନା ।

ପଟ୍ଟନାୟକ—କାଇଁ, ସେ କାଗଜ କାହା ପାଖରେ ଅଛି ?
(ସ୍ୱାମୀ ତାଙ୍କ ବ୍ରିଫକେସରୁ ବାହାରକରି ଦେଖେଇଲେ)

ସ୍ୱାମୀ—ମୋ ପାଖରେ ଅଛି । ଏଇ ଦେଖନ୍ତୁ···

ପଟ୍ଟନାୟକ—(ଦେଖି କଣ ଭାବିଲେ) ଆଚ୍ଛା, ସେ କେମିତି ବାହାର କଲେନ ! ମୁଁ ପଚାରେଁ, ଆପଣମାନେ ବସନ୍ତୁ, ମୁଁ ଟେଲିଫୋନ କରେ । ବଳି, ଟି' ଦେ ଏମାନଙ୍କୁ ।
(ବଳଭଦ୍ର ଭିତରକୁ ଯାଇଚ)
(ମିଷ୍ଟର ପଟ୍ଟନାୟକ ଟେଲିଫୋନ ଉଠେଇଚନ୍ତି । କଣ କଥାବାର୍ତ୍ତା କରିଚନ୍ତି, କେହି ଶୁଣିପାରିନାହାନ୍ତି । କାରଣ ଏମାନେ ସମସ୍ତେ ନିଜ ନିଜ ଭିତରେ ଆଲୋଚନା କରିବା ଆରମ୍ଭ କରିଦେଇଚନ୍ତି । କେବଳ ଶେଷ କେଇଟା କଥା ଅସ୍ପଷ୍ଟ ହୋଇ ପଟ୍ଟ-ନାୟକଙ୍କର ଶୁଣାଗଲା—'ଓ·····ତା'ହେଲେ ଆସୁଚନ୍ତି, ଆସନ୍ତୁ' ଟେଲିଫୋନ ରଖି)

ପଟ୍ଟନାୟକ—ଯା'ହଉ, ମୁଁ କୃତଜ୍ଞ ଯେ ଆପଣମାନେ ସମସ୍ତେ ମୋ କଥାନୁଯାୟୀ ଆସିପାରିଚନ୍ତି । ଟିକଏ ଅପେକ୍ଷା

କରନ୍ତୁ । ସେ କାଗଜପତ୍ରଗୁଡ଼ାକ ମୁଁ ବାହାରକରେ । ତା'ହେଲେ କଥାଭାଷା କରିବାକୁ ସୁବିଧା ହବ ।

(ଏତିକବେଳେ ପ୍ରବେଶ କରନ୍ତି ଆଉ ଜଣେ ତରୁଣ)

ତରୁଣ—ଆଜ୍ଞା, ମୁଁ ଆସିଛି । ମୁଁ ହେଲି ଆପଣଙ୍କର ଦୈନିକ ସମାଚାରର ରିପ୍ରେଜେଣ୍ଟେଟିଭ । (ନମସ୍କାର କରିଛି) ସମ୍ପାଦକଙ୍କ ତରଫରୁ ମୁଁ କ୍ଷମାମାଗିବାକୁ ଆସିଛି ।

ପଟ୍ଟନାୟକ—ଆପଣ ଆସିଲେ ତା'ହେଲେ···?

ତରୁଣ—ଆଜ୍ଞା, ଶୁଣନ୍ତୁ ଆପଣମାନେ ! ଖବରକାଗଜରେ ବାହାରିଥିବା ହେମବଲ୍ଲଭ ନାୟକ ହବା ଜଗାରେ ହେମବଲ୍ଲଭ ପଟ୍ଟନାୟକ ହୋଇଯାଇଛି । ତାଙ୍କ ଘରଟା ଭଡ଼ା ହଅାସିବା କଥା, ଆଜ୍ଞା !

ସମସ୍ତେ—କଣ ହେଲା !

ତରୁଣ—ଆଜ୍ଞା ହଁ, ସେ ଅପେକ୍ଷା କରିଚନ୍ତି । ତାଙ୍କ ପୁଅ ଆସି କଣ ତାଲିକା ନେଇ ମିଳେଇଦେଇଗଲେ ଆପଣମାନେ ସବୁ ଏଠି ଅଛନ୍ତି ବୋଲି । ସେମାନେ ମଧ୍ୟ ଟେଲିଫୋନ୍‌ରେ ଖବରଦେଲେ ବର୍ତ୍ତମାନ । କଥା କଣ କି, ଆପଣମାନେ ଯୋଉ post boxକୁ advance application ଦେଇଥିଲେ ସେଗୁଡ଼ା ସବୁ ତାଙ୍କ ପାଖକୁ ଯାଇଚି । କିନ୍ତୁ ତା'ଣ ଭିତରୁ ଆପଣ କେତେଜଣ ଏଠି ରହିଯାଇଚନ୍ତି ।

ସମସ୍ତେ—କେମିତି ? ତା'ମାନେ, ଆପଣଙ୍କ କାଗଜ···

ତରୁଣ—ହେଇ ଆଜ୍ଞା, ତା ପର ଇସୁରେ ଭ୍ରମ ସଂଶୋଧନ ବାହାରିସାରିଚି, ଦେଖନ୍ତୁ । କିନ୍ତୁ ଆପଣମାନେ ମିଛ୍ କରିଛନ୍ତି ବୋଧହୁଏ ।

(ଏଇକଥାରେ ସମସ୍ତେ କେମିତି ହତବାକ ହୋଇ ଯାଇଚନ୍ତି । କାହାର ମୁହଁରେ କଥା ନାହିଁ । ତଥାପି ଆଲୋଡ଼ନ ଗୋଟାଏ ସୃଷ୍ଟି ହୋଇଚି)

ପଟ୍ଟନାୟକ— ତରୁଣଙ୍କୁ) ବାସ, ଆଉ କିଛି କହିବାର ଅଛି ଆପଣଙ୍କର ?

ତରୁଣ—ଆଉ କଣ କହିବ ଆଜ୍ଞା, ଏପରି ଏକ ଭୁଲ ସମ୍ବାଦ ପରିବେଷଣ ପାଇଁ ଆମେ ଦୁଃଖିତ । ଏଥର ଆପଣ-ମାନେ ସେଠିକି···

(ସମସ୍ତେ ଉଠିଚନ୍ତି— ବଳଭଦ୍ର ଚା'ନେଇ ଆସିଚି)

ବଳ—ଆଜ୍ଞା, ଚା' ।

(ସମସ୍ତେ ଚା'କୁ ଅନେଇ ଚାଲିଯାଇଚନ୍ତି । ଚାଲିଗଲା-ବେଳେ ପରସ୍ପରର ଗଢ଼ିଉଠିଥିବା ସମ୍ପର୍କ ଅନୁଯାୟୀ ଦୃଷ୍ଟି ପ୍ରତିବଦଳ କରି ଚାଲିଯାଇଚନ୍ତି । ଆସ୍ତେ ଆସ୍ତେ ଆଲୋକ ମିଳେଇଯାଇଚି । ଟେବୁଲ ଉପରେ ରହିଗଲା କେବଳ କେଟେକପ୍ ଚା' ଆଉ ରହିଗଲେ ବଳ, ନଶୀଥ ଏବଂ ମିଷ୍ଟର ପଟ୍ଟନାୟକ ।)

---